# ଅନାବନା ଗପ



ଦାଶ ବେନହୁର



ଅଗ୍ରଗାମୀ
କାଶୀପୁର

# ଅନାବନା ଗପ

ଲେଖକ :
ଦାଶ ବେନହୁର

ଛବି :
ବଳଦେବ ମହାରଥୀ

ପ୍ରକାଶକ :
ଅଗ୍ରଗାମୀ
କାଶୀପୁର-୭୬୫ ୦୧୫
ରାୟଗଡ଼ା (ଓଡ଼ିଶା)

ପ୍ରକାଶକାଳ :
୧୯୯୯

ମୁଦ୍ରଣ :
ଶୋଭନ,
ଭୁବନେଶ୍ୱର

ମୂଲ୍ୟ : ପନ୍ଦର ଟଙ୍କା



## ANABANA GAPA

Author :
Dash Benhur

Illustration :
Baldev Maharatha

Publisher :
Agragamee
Kashipur - 765 015
Rayagada

Edition :
1999

Printer :
Shovan,
Bhubaneswar

Price : Rupees Fifteen only

## ଏଥିରେ ଅଛି ........





# କୁନା ଭାଇଙ୍କ ଚପଲ

ଥରେ କୁନାଭାଇଙ୍କ ପାଇଁ ହଳେ ଚପଲ କିଣାହେଲା । ବଢ଼ିଆ ଚକମକିଆ ଚପଲ । ଉପରେ ଲାଗିଥାଏ ସୁନେଲୀ ରଙ୍ଗର ସୁନ୍ଦର ଫାସିଆ । ଚପଲ ହଳକ ଭାରି ଭଲ ଲାଗୁଥାଏ କୁନାଭାଇଙ୍କୁ । ଏତେ ଭଲ ଲାଗୁଥାଏ ଯେ ସେ ତାକୁ ପିନ୍ଧି ଘରେ ବାହାରେ ସବୁଆଡ଼େ ବୁଲୁଥାଆନ୍ତି ।

ନାଆଁକୁ ସିନା କୁନାଭାଇଙ୍କ ଚପଲ, କିନ୍ତୁ ରାତିହେଲେ ଦୁଇ ଚପଲଙ୍କ ଭିତରେ ଚୁପ୍‌ଚାପ୍ କଥାଭାଷା ଚାଲେ । ଏଣୁ ତେଣୁ କେତେ କଥା ପଡ଼େ । ଦୁଇଜଣଙ୍କ ଭିତରୁ ଡାହାଣ ଚପଲଟି ଟିକେ କୁହାଳିଆ । ତେଣୁ ସୁଯୋଗ ପାଇଲେ ବାଆଁ ଚପଲକୁ ଥଟ୍ଟା ଟାପରା କରି ସେ ଏଣୁ ତେଣୁ କହିଦିଏ । ହେଲେ ବାଆଁ ଚପଲଟି ଧୀରସ୍ଥିର । ନ ବୁଝି ନ ଶୁଝି ସେ କାହାକୁ କିଛି କହେ ନାହିଁ ।





ଦିନକର କଥା । କ'ଣ ହୋଇଚିନା, କୁନାଭାଇ ତରତରରେ ଦଉଡ଼ି ଯାଉଯାଉ ବାଆଁ ଚପଲର ଫାସିଆଟି କୋଉଠି ଖସିପଡ଼ିଲା । ତାଙ୍କର ତେଣିକି ନଜର ନାଇଁ । ଘରେ ଆସି ଦେଖିଲାବେଳକୁ ଗୋଟେ ଚପଲ କେମିତି ନାଣ୍ଡିଆ ଦିଶୁଚି ।

କୁନା ଭାଇ କ'ଣ କରନ୍ତେ ଆଉ !

ସେଦିନ ରାତି ହଉହଉ ଫେଁ ଫେଁ ହସରେ ଫାଟି ପଡ଼ିଲା ଡାହାଣ ଚପଲ । ବାଆଁ ଚପଲକୁ ଛିଗୁଲେଇ ସେ କହିଲା–''କ'ଣ ନାଣ୍ଡିଆ ଭାଇ ! କୁଆଡ଼େ ଗଲା ତମ ଚକମକିଆ ଗହଣା ? ଆରେ ଭାଇ, ସମସ୍ତଙ୍କ ଦେହକୁ କ'ଣ ସବୁକଥା ସାଜେ ? ହେଇ ଦେଖ, ମୁଁ କିମିତି ଦିଶୁଚି, ଆଉ ତୁମେ କେମିତି ଦିଶୁଚ ! ମୋ ଭଳିଆ ସିନା ତମେ ସୁନେଲୀ ଫାସିଆ ପିନ୍ଧିଥିଲ ହେଲେ କାଇଁ, କୋଉ ରହିଲା ତମ ଦେହରେ ? ମୁଁ ଡାହାଣ ଗୋଡ଼ର ଚପଲ । ମୋ ଆସନ ଉଚରେ । ମୋ ସାଙ୍ଗରେ ତୁମେ ସମାନ ହୁଅନ୍ତ କୁଆଡୁ ?''

ବାଆଁ ଚପଲକୁ ବଡ଼ ଖରାପ ଲାଗିଲା ଏକଥା ଶୁଣି । ଡାହାଣ ଚପଲକୁ ସେ କହିଲା – ''ଶୁଣଭାଇ, ଆମେ ଦୁଇଜଣ ଏକାପରି । ଆମର କାମ ଏକାଠି ମିଶି ଅନ୍ୟର ସେବା କରିବା । ଯେତେଦିନ ଆମର ଜୀବନ ଥିବ ସେତେଦିନ ଯାଏଁ ସାଙ୍ଗ ହୋଇ ଆମେ ସେଇଆ ହିଁ କରିବା କଥା । ମିଳିମିଶି ରହିବା ଆମ ଦୁହିଁଙ୍କ ପାଇଁ ଉପକାରୀ । ସେଇଥିରେ ଆମର ଆନନ୍ଦ । ଆଉ ରୂପକଥା ଯାହା କହିଲ, କାହା ହାତରେ ଅବା ସେ କଥା ଅଛି ! ଆଜି ମୋ ଦିହରୁ ଫାସିଆ ଖସିଚି, କାଲି ତୁମର କ'ଣ ହେବ କିଏ କହିବ ? ସାଙ୍ଗକୁ ଅସୁବିଧାରେ ଦେଖି, ଏମିତି ଛିଗୁଲେଇ କହିବା କ'ଣ ଉଚିତ୍ ?''

ହେଲେ ଡାହାଣ ଚପଲର ସେକଥାକୁ ପରବାଏ ନାଇଁ । ବାଆଁ ଚପଲ କଥା ଶୁଣି ସେ ଖାଲି ଫେଁ ଫେଁ ହସିଲା, କହିଲା, ଆରେ ଯାଆମ... । ଯେତିକିର ଲୋକ ସେତିକିରେ ରହ । କିଏ ତୋର ଉପଦେଶ ଶୁଣିବାକୁ ଯାଉଚି ।



ଏଇଭଳି କେତେଦିନ ଗଲା ।

ହଠାତ୍ ଦିନେ କୁନାଭାଇ କୋଉଠି ଗୋଟେ ଜାଗାରେ ଉଚ୍ଚାଥାନକୁ ଗୋଡ଼ ବଢ଼େଇ ଉଠିବାକୁ ଯାଉଯାଉ ଡାହାଣ ଚପଲର ଫିତାଟା ଠିକ୍‌କିନା ଛିଣ୍ଡିଗଲା । ଏହେ କହି କୁନାଭାଇ ଡାହାଣ ଗୋଡ଼କୁ ଚାହିଁଲେ । ପୁଣି କ'ଣ ମନହେଲା କେଜାଣି ସେଇ ଗୋଡ଼ଟାକୁ ଉପରକୁ ଜୋର୍‌କରି ଛାଟିଦେଲେ । ଶୂନ୍ୟେ ଶୂନ୍ୟେ ଛିଣ୍ଡା ଚପଲଟା ଉପରକୁ ଉଠି ଦୁଲ୍‌କିନା କଚାଡ଼ି ପଡ଼ିଲା ତଳେ । ସେଇଠି କୁନାଭାଇ ବାଆଁ ଚପଲଟାକୁ ବି ଛାଡ଼ିଦେଇ ଚାଲି ଆସିଲେ ।

ଆସିଲାବେଳେ କହିଲେ– ''ଯାଃ, ବାପାଙ୍କୁ କହି କାଲି ଆଉ ହଳେ ଚପଲ କିଣିବାକୁ ପଡ଼ିବ ।''

ରାତିହେଲା । ଚପଲ ଦୁଇଟି ସେଇଠି ଟିକିଏ ଛଡ଼ାଛଡ଼ି ହେଇ ପଡ଼ିଥାଆନ୍ତି । ବାଆଁ ଚପଲଟି ପଡ଼ିପଡ଼ି ଚୁପ୍‌ଚାପ୍ ଚାହୁଁଥାଏ ଚାରିଆଡ଼କୁ । ସୁକୁସୁକୁ ହୋଇ କାନ୍ଦୁଥାଏ ଡାହାଣ ଚପଲ । କେତେବେଳକେ ଡାହାଣ ଚପଲ କାନ୍ଦକାନ୍ଦ ହେଇ କହିଲା– ଭାଇ, ଆଜିଠୁ ଆମର ଦିନକାଳ ସରିଲା । ଜଣେ ଅକାମୀ ହେଲେ ଆରଜଣକ ବି ଅକାମୀ । ଏକଥା ଏଯାଏଁ ମୋ ମୁଣ୍ଡରେ ପଶି ନ ଥିଲା । ଆଗରୁ ସବୁବେଳେ ତୁମ ସହ ମୁଁ ଖରାପ ବ୍ୟବହାର କରିଛି । ଦିନେହେଲେ ତୁମକୁ ଖୁସି କଲାଭଳି ପଦେ କହିନାଇଁ । ସେତକ କହିଥିଲେ ଆମ ଦିନସବୁ କେଡ଼େ ଆନନ୍ଦରେ କଟି ନ ଥାନ୍ତା ସତେ ? ମୋର ଭୁଲ ହୋଇଚି । ମତେ କ୍ଷମା କରିଦବ ଭାଇ । ତୁମ ସହିତ ଆଗରୁ ଭଲ ବ୍ୟବହାର କରି ନ ଥିବାରୁ ମୋର ଅନୁତାପ ହେଉଛି ।

ବାଆଁ ଚପଲଟି ସେଇମିତି ଚାହିଁଥାଏ ଚୁପ୍‌ଚାପ୍ । କ'ଣ ଆଉ କରନ୍ତା ? ଯା'ହଉ ଶେଷବେଳକୁ ହେଲେ ବି ଡାହାଣ ଚପଲଟି ତା'ର ଭୁଲ ବୁଝିପାରିଲାତ !





# ଅସରପା ଓ ଅସନା ମୁହଁ

ଜିନୁ ଗୋଟେ ଛୋଟ ଝିଅ । ବୟସ ମୋଟେ ତିନି ବରଷ । ଏତେ ଛୋଟ ହେଲେ ବି ତା'ର ବଡ଼ ସାହସ । ସେ ଅନ୍ଧାରକୁ ଡରେନି କି ଝିଟିପିଟିକୁ ବି ଡରେନି । ଏମିତି କି କୋଉ ବୁଲାକୁକୁର ତାଙ୍କ ଘର ବାରଣ୍ଡାକୁ ଉଠିଲେ, ସେ ମୋଟେ ନ ଡରି, ନିଜେ ଗୋଟେ ଛାଟ ଧରି ଗୋଡ଼େଇଯାଏ ତା' ଆଡ଼କୁ । ସଁବାଳୁଆ ବା ତେଲଗୁଣିପୋକ ଦେଖିଲେ କାଠି ଗୋଟାକରେ ଫୋପାଡ଼ି ଦିଏ ଦୂରକୁ ।

ହେଲେ କ'ଣ ହବ, ଗୋଟେ କଥାକୁ କିନ୍ତୁ ଜିନୁର ଭାରି ଡର । ସେଇଟା ହେଲା ଅସରପା । କୋଉଠି ଯଦି ସେ ଅସରପା ଦେଖିପକାଏ, ତେବେ ଭୟରେ ଆଖି ବୁଜି ପଳେଇଯାଏ ସେଠୁ । ନାଇଁ, ଦେହରେ ଯଦି ଅସରପାଟା ଚଢ଼ିଗଲା, ତେବେ ସରିଲା କଥା । ଚିହ୍ନି ଛାଡ଼ି ସେ ଏମିତି ରଡ଼ି କରିବ ଯେ କାନ ଅତଡ଼ା ପଡ଼ିଯିବ । ସେଇଥିପାଇଁ ଡରରେ ସେ ଅସରପା କହୁ କହୁ ତା' ପାଟି ଖନିବାଜି ଶୁଭେ ''ଅପସରା'' ବୋଲି । ଅସରପାଟାଏ ଦେଖୁ ଦେଖୁ ସେ ଡାକପକାଏ, ''ମାଆଲୋ ଧାଇଁଆ, ଏଇଠି ଗୋଟେ ''ଅପସରା'' ଅଛି । ମତେ କାମୁଡ଼ି ପକେଇବ ।''







ଜିନୁ ଘରେ ତା'ର ବାପା, ମାଆ ଓ ଭାଇ ବି ଅଛନ୍ତି । ଭାଇ ପଢୁଛି ତୃତୀୟ ଶ୍ରେଣୀରେ । ତାକୁ ଆଠବର୍ଷ ହେଲାଣି । ଜିନୁ କିନ୍ତୁ ସ୍କୁଲ ଯାଇନି । ଆହୁରି ବରଷକ ପରେ ଯାଇ ସେ ସ୍କୁଲ ଯିବ । ତଥାପି ପାଠ ପଢ଼ିବାକୁ ତା'ର ଭାରି ଇଚ୍ଛା । ବେଳେବେଳେ ଭାଇର ବହିକୁ ଧରି ସେ କ'ଣ ସବୁ ଏଣୁ ତେଣୁ ପଢ଼େ । ଗାଲୁରୁ ଗାଲୁରୁ ହେଇ ଗୀତ ଗାଏ । ସମସ୍ତେ ଭଲ ପାଆନ୍ତି ଜିନୁକୁ । କାଖେଇ, କୋଳେଇ ହାତ ଧରି ତାକୁ ବଜାର ବୁଲାନ୍ତି, ଗେହ୍ଲା କରନ୍ତି । ତା' ପାଇଁ ଚକୋଲେଟ୍ କିଣି ଦିଅନ୍ତି । ଖେଳଣା ବି କିଣନ୍ତି ।

ଜିନୁର ସବୁ ଭଲ ଯେ, ଗୋଟେ ଛୋଟ ଭୁଲ୍ ପାଇଁ କିନ୍ତୁ ସେ ସବୁଦିନ ସକାଳେ ଗାଳି ଶୁଣେ । ମାଆ ଚିଡ଼ିଚିଡ଼ି ହୁଅନ୍ତି, ବାପା ବି ରାଗିଯାଆନ୍ତି ବେଳେବେଳେ । ଭାଇ ଦଉଡ଼ି ଆସି ବୁଝାଏ ଜିନୁକୁ । ବୁଝେଇ ବୁଝେଇ ଶେଷକୁ ଭାଇ ବି ଚିଡ଼ିଯାଇ ପଳାଏ ସେଠୁ ।

ସଭିଏଁ ସକାଳୁ ଉଠି ମୁହଁ ହାତ ଧୁଅନ୍ତି । ଦାନ୍ତ ଘଷନ୍ତି । ପରିଷ୍କାର ହୁଅନ୍ତି । ହେଲେ ଜିନୁର ସେଇ ଦାନ୍ତଘଷା ଠି ଯେତେ ସବୁ ଅସୁବିଧା । ମାଆ ପଛରେ ଗୋଡ଼େଇଥିବେ, ସେ ଏକଡ଼ ସେକଡ଼ ଲୁଚୁଥିବ । ବ୍ରସ୍ ଧର ବୋଲି କହିଲେ ସେ ଧରିବନି । ପାଟି ଖୋଲ ବୋଲି କହିଲେ ଖୋଲିବନି । ସେଇମିତି ଖୁମାଣି ହୋଇ ବସିଥିବ । ଅନେକବେଳ କହି କହି ଥକିଲେ ଯାଇ ସେ ଦାନ୍ତ ଘଷିବ । ଖାସ୍ ଏଇ କଥାପାଇଁ କେବଳ ତାକୁ ପ୍ରତିଦିନ ସକାଳେ ଗାଳି ଶୁଣିବାକୁ ପଡ଼େ ।

ହେଲେ ଜିନୁ କ'ଣ ବୁଝୁଚି ସେକଥା ?

ଏଇ ଏବର କଥା । ସବୁଦିନପରି ଦିନେ ଜିନୁ ଶୋଇଥିଲା ଖଟରେ । ସକାଳ ପାଇଲା । ବାପା, ମାଆ, ଭାଇ ସମସ୍ତେ ଉଠି ସାରିଥିଲେ ସେତେବେଳକୁ । ଜିନୁର ନିଦ ଭାଙ୍ଗି ନ ଥାଏ । ସେ ଏକୁଟିଆ ସେଇଭଳି ଶୋଇଥାଏ ଖଟରେ । ଏତିକିବେଳେ କାହିଁକି କେଜାଣି, ହଠାତ୍ ଉଠିପଡ଼ି ସେ ମଆ ମାଆ ବୋଲି ରଡ଼ି ଛାଡ଼ି କାନ୍ଦିଲା । ମାଆ ରୋଷେଇଘରୁ କାମ ଛାଡ଼ି ଦଉଡ଼ିଲେ ଜିନୁ ପାଖକୁ । ସେତେବେଳକୁ ଜିନୁ ଡରିଯାଇଥାଏ ଖୁବ୍ ।

ମାଆ ଦେଖିଲେ ଗୋଟେ କୁନି ଅସରପା ଆସି ଜିନୁର ଶେଯ ପାଖରେ ବସି ବସି ନିଶ ହଲାଉଛି । ହୁସ୍‌କରି ଗୋଟେ ଗାମୁଛା ହଲେଇ ଅସରପାକୁ ମାଆ ତଡ଼ିଦେଲେ ଶେଯଉପରୁ । ସଙ୍ଗେ ସଙ୍ଗେ ଜିନୁ ଦଉଡ଼ିଆସି କୁଣ୍ଢେଇ ଧରିଲା ମାଆଙ୍କୁ । ତଥାପି ତା'ର ସୁଁ ସୁଁ କାନ୍ଦ ବନ୍ଦ ହେଇ ନଥାଏ ।



ମାଆ ବୁଝେଇ ଦେଲେ – ଛି ! ମୋ ସୁନାଟା ପରା । ଏମିତି କାନ୍ଦନ୍ତି !

କେତେବେଳ ପରେ ମାଆଙ୍କ କାଖରେ ଥାଇ ଜିନୁ କହିଲା – ''ମାଆଲୋ ! ମୁଁ ଯେତେବେଳେ ଶୋଇ ନ ଥିଲିକି– କ'ଣ ହେଲାନା ଉଠିଲାବୋଳକୁ ସେ 'ଅପସରାଟା' ଆସି ମୋ ମୁହଁ ପାଖରେ ତା' ନିଶକୁ ହଲାଉଚି । ବଡ଼ ଡରଲାଗିଲା ପରା ! ନ ହେଲେ ମୁଁ କ'ଣ କାନ୍ଦିଥାନ୍ତି କି ?''

ସେଇଠୁ ମାଆ କହିଲେ – ''କାହିଁକି ତୋ' ପାଖକୁ ସକାଳୁ ଅସରପା ଆସିଥିଲା ଜାଣିଚୁ ଜିନୁ ? ଅସରପାମାନେ ସବୁବେଳେ ଅସନା ଜାଗା ଖୋଜି ସେଇଠିକି ଯାଆନ୍ତି । ଆଜି ତୁ ଡେରିରେ ଉଠିଲୁ, ପୁଣି ଏତେ ବେଳଯାଏଁ ଦାନ୍ତ ବି ଘଷିନୁ । ଅସରପାଟା ଯେତେବେଳେ ଦେଖିଲା କିଏ ଗୋଟେ ଅସନାମୁହଁ କରି ଏତେବେଳଯାଏଁ ଶୋଇଚି, ସେ ଖଟ ଉପରେ ଚଢ଼ି ଦଉଡ଼ିଗଲା ସେଇଠିକି । ବୁଝିଲୁ ! ଆଉ ଟିକିଏ ହେଇଥିଲେ, ତା' ନିଶକୁ ତୋ ମୁହଁରେ ତ ବଜେଇ ଦେଇ ଥାଆନ୍ତା, ଆଉ କ'ଣ !

ଅସରପା ନିଶକଥା ଭାବି, ଜିନୁର ଦିହଟା କେମିତି ଶୀତେଇ ଗଲା । ସେ ଆଉକିଛି ଅଝଟ ନ ହେଇ ସେଦିନ ସୁନାପିଲାପରି ଚୁପ୍‌ଚାପ୍ ବସି ଦାନ୍ତ ଘଷିଲା ।

ତା'ପର ଦିନ ସକାଳୁ ମାଆ ଗୋଟେ ନୂଆ କଥା ଦେଖିଲେ । ସକାଳ ପାଉ ପାଉ ଚଟାପଟ ଶେଯରୁ ଉଠି ଜିନୁ କହିଲା – ମାଆ ! ମତେ ବ୍ରସ୍ ଆଉ ପେଷ୍ଟ ଦେଲୁ । ମୁଁ ଦାନ୍ତ ଘଷିବି ପରା ।

ଏ କଥା ଶୁଣି ବାପା, ଜିନୁ ପାଖକୁ ଆସି ତା' ମୁଣ୍ଡ ଆଉଁସି କହିଲେ – ''ଆମ ଜିନୁଟା ଏଣିକି ଗୋଟେ ସୁନାଝିଅ ହେଇଗଲାଣି । ନୁହଁ !''



# ମୂଷା ଗାଁର ଗପ

ଅନେକ ଦିନ ତଳର କଥା ।

ଗୋଟିଏ ଜଙ୍ଗଲ ଭିତରେ ଥାଏ ଏକ ମୂଷା ଗାଁ । ବେଶ୍ ବଡ଼ ଗାଆଁଟା । ସେଠି ଖାଲି ମାଟିଆ ରଙ୍ଗର ମୂଷାମାନେ ଥାଆନ୍ତି । ଚାଷବାସ, ବେପାର ବଣିଜ କରି ବଡ଼ ମଉଜରେ ଥାଆନ୍ତି ସେମାନେ । କେଡ଼େ ସୁନ୍ଦର ଘରଦୁଆର ବନେଇ ଥାଆନ୍ତି । ଖାଇବା ପିଇବାରେ ଅଭାବ ନ ଥାଏ କାହାର । କିଏ ମିଠେଇ ଖାଇଲାଣି ତ କିଏ ରସଗୋଲା ଖାଇଲାଣି । କିଏ ମାଛ ଖାଇଲାଣି ତ କିଏ ଶୁଖୁଆ ଖାଇଲାଣି । ଟଙ୍କା ପଇସା, ଧନ ଦଉଲତ ଢେର ଥାଏ ମୂଷା ଗାଁର ମୂଷାମାନଙ୍କ ପାଖରେ ।

ସେଇ ଗାଁ ମଝିରେ ଥାଏ ଗୋଟେ ବଡ଼ ଖୁଣ୍ଟ । ସେଥିରେ ଏଡ଼େ ଲମ୍ବ ମାଟିଆରଙ୍ଗର ପତାକା ଉଡୁଥାଏ ଫର ଫର ହୋଇ ।





ମୂଷାମାନେ ଖୁଣ୍ଟକୁ ଠାକୁର ଭଳି ମାନନ୍ତି । ପତାକାକୁ ପୂଜା କରନ୍ତି । ସେମାନେ ଭାବନ୍ତି ପତକା ହଉଚି ତାଙ୍କ ବାପ ଅଜା ଅମଳର ଚିହ୍ନ । ତେଣୁ ବଡ଼ ଆଦର କରନ୍ତି ସେମାନେ ଖୁଣ୍ଟ ଆଉ ପତାକାକୁ । ନିତି ବେଳ ବୁଡ଼ିଲେ ମୂଷାମାନେ ଆସି ମାଟିଆ ପତାକା ତଳେ ଏକାଠି ହୁଅନ୍ତି । ଗୀତ ଗାଆନ୍ତି ଭଜନ ଗାଇଲା ପରି । କେତେକଥା ଆଲୋଚନା କରନ୍ତି । ବେଳେବେଳେ ନାନା ମଉଜ ମଜଲିସ୍ କରି ଚେଁ ଚାଁ ହୁଅନ୍ତି ।

ମୂଷା ଗାଁରେ ସବୁ ଭଲ । ହେଲେ ଗୋଟେ କଥା ବଡ଼ ଅଡୁଆ ଲାଗେ । ସମୟ ସମୟରେ ବଡ଼ ମୂଷାମାନେ କାହିଁକି କେଜାଣି ଆପଣା ଆପଣା ଭିତରେ କଳି କରନ୍ତି । କାମୁଡ଼ା କାମୁଡ଼ି ଲାଗନ୍ତି । ପୁଣି କିଛି ଦିନ ଗଲେ ଯୋଉ କଥାକୁ ସେଇକଥା । ଏଇମିତି ଦିନଯାଏ । ହଠାତ୍ ଦିନେ ଦଳେ ଧଳାମୂଷା କାହୁଁ ଆସି କହିଲେ, ତମ ଗାଁରେ ଆମକୁ ଟିକେ ଜାଗା ଦିଅ । ଆମେ ଏଠି ଆମ ଆଡ଼ର ଜିନିଷପାତି ଆଣି ବିକାବିକି କରିବୁ । ଯେତେବେଳେ ମନା କରିଦବ ଆମେ ଆଉ ଉଁ ଚୁଁ ନ କରି ପଳେଇଯିବୁ ।

ବଡ଼ ମୂଷାମାନେ ସେଦିନ କ'ଣ ପାଇଁ ଗୋଟେ କଳି କଜିଆରେ ମାତିଥିଲେ । କିଛି ନ ବୁଝି ନ ଶୁଝି କହିଦେଲେ, ''ହଉ, ଦୋକାନ ବଜାର ଖୋଲି ବେପାର କର । ହେଲେ ଆମକୁ ମଝିରେ ମଝିରେ ଭଲମନ୍ଦ କିଛି ଦେଉଥିବ ।''

ଧଳାମୂଷାମାନେ ସେଇଠୁ ମୂଷା ଗାଁରେ ରହିଲେ । ବେଉସା କଲେ । ଦେଖୁ ଦେଖୁ ଦିନ କେଇଟାରେ ଚାଲାକି କରି ସେମାନେ ମାଟିଆ ମୂଷାଙ୍କର ଘରସବୁ ମାଡ଼ି ବସିଲେ । ଜିନିଷପାତି ଛଡ଼େଇ ନେଲେ । ତାଙ୍କ ଖାଇବା ଜିନିଷମାନ ଖାଇ ତାଙ୍କୁ କାଙ୍ଗାଳ କରିଦେଲେ । ଗାଁ ମଝିରେ ଥିବା ଏତେ ବଡ଼ ଖୁଣ୍ଟଟାକୁ ଉପାଡ଼ି ନଷ୍ଟ କରିଦେଲେ । ମାଟିଆରଙ୍ଗର ଏଡ଼େ ସୁନ୍ଦର ପତାକାଟାକୁ କାଟି କୁଟୁକୁଟା କରିଦେଲେ ।

ଶେଷକୁ ଧଳା ମୂଷାମାନେ ନିଶମୋଡ଼ି ମାଟିଆମୂଷାଙ୍କୁ କହିଲେ–''ଆମେ ଯାହା କହିବୁ ତମେ ସବୁ ସେଇଆ କରିବ । ନ ହେଲେ ବାନ୍ଧି ନେଇ ତୁମକୁ ଜେଲ ଗାଡ଼ରେ ରଖିବୁ । ପିଟି ପିଟି ମାରିଦବୁ ତମକୁ ।''





ମାଟିଆ ମୂଷାମାନେ ଏକାଠି ହବାକୁ ଆଉ ବାଟ ପାଉ ନ ଥାନ୍ତି । କ'ଣ ହବ ଏବେ ? ଗାଁ ମଝିରେ ଖୁଣ୍ଟ ଥିଲାବୋଲି ସେମାନେ ତା' ଚାରିପଟେ ଏକାଠି ହେଉଥିଲେ । ଏବେ କରିବେ କ'ଣ ? କିଏ ଇଆଡ଼େ ଧାଇଁଲା ତ କିଏ ସିଆଡ଼େ ଧାଇଁଲା । ବଡ଼ ବିଷମ କଥା । ଧଳାମୂଷାମାନେ ଦିନୁଦିନ ପ୍ରବଳ ହେବାରେ ଲାଗିଲେ । ମାଟିଆ ମୂଷାମାନେ ତାଙ୍କୁ ଡରି ମରି ଚଳୁଥାନ୍ତି ।

ଏଇମିତି ଢେର ଦିନ ବିତିଗଲା ।

ଶେଷକୁ ଗୋଟେ ପାକୁଆ ପାଟିଆ ବୁଢ଼ା-ମାଟିଆମୂଷା ଠୁକୁଠୁକୁ କରି ବଙ୍କୁଲିବାଡ଼ି ଧରି ବୁଲିଲା ଗାଁଟା ସାରା । ତଳପଟ ଉପରପଟ ସବୁଆଡ଼େ ବୁଲି ସେ କହିଲା—''ଭାଇମାନେ ଢେର ହୋଇଗଲା । ଆଉ ନୁହଁ । ଏଣିକି ଆଉ ସହିବାନି ଆମେ । କେହି ଡରିଲେ ଚଳିବନି ଆଉ । ଆମେ ଏତେ ମୂଷା ଏଠି ଅଛେ । ଚାଲ ଧଳାମୂଷାପଲଙ୍କୁ ଚାରିପଟୁ ଘେରିକରି ରହିବା । ଆମ ସଂଖ୍ୟା ତାଙ୍କଠୋଉ କାହିଁ କେତେ ଅଧିକ । କେତେ ମାରିବେ ସିଏ ମାରନ୍ତୁ । ଆମେ ତ ତାଙ୍କର କିଛି ଛଡ଼େଇ ନଉନେ । ଆମ ଜିନିଷ ଆମେ ମାଗୁଚେ । ଆମ ଗାଁ ଆମର । ସେମାନେ ଏଠି ହୁକୁମ୍ କରିବାକୁ କିଏ ?''

''ଚାଲ, ଚାରିପଟ ଘେରି କୁଆଡ଼କୁ ଛାଡ଼ିବାନି ସେମାନଙ୍କୁ । ଆମେ ବି ନିଜେ ଖାଇବାନି । ମାଡ଼ଗୋଳ କରି ଲାଭ ନାହିଁ । ସେମାନେ ଜାଣନ୍ତୁ, ଆମେ ନ୍ୟାୟ କଥା କହୁଚୁ । ବଳକେ ମନ ବଦଳିବ ସେମାନଙ୍କର । ସତକଥା ଆଗରେ ସମସ୍ତେ ମୁଣ୍ଡ ନୁଆଁନ୍ତି । ସେମାନେ ବି ନୁଆଁଇବେ ।''

''ନ ନୁଆଁଇ ଯିବେ କୁଆଡ଼େ ଦେଖିବା ! ମରିବା ପଛେ ଛାଡ଼ିବାନି ଆମେ । ରହ ଦେଖିବ, ଆମେ ଏକାଠି ହେଲେ ସେମାନେ କେମିତି ଡିଆଁମାରି ପଳେଇବେ ।''

ଶେଷକୁ ସେଇଆ ହେଲା । ଚାଲିଲା ଘେରୋଉ । ସମସ୍ତେ ଖାଡ଼ା ଉପାସ । ପହିଲେ ପହିଲେ ଧଳାମୂଷା ପଲ କାମୁଡ଼ା କାମୁଡ଼ି କଲେ । କେତେ କାମୁଡ଼ିବେ ? ଏଣେ ମାଟିଆମୂଷା ଥୋକେ କାମୁଡ଼ା ଖାଇ, ଉପାସ ରହି ମଲେ । ହେଲେ ଘେରୋଉ ଭାଙ୍ଗିଲାନି ।

ବାପ୍‌ରେ ବାପ୍ । ସେ ବୁଢ଼ା ମାଟିଆମୂଷାର ବହପ ଦେଖି ସଭିଏଁ ତାଟକା । ସବା ଆଗ ଧାଡ଼ିରେ ବସିଥାଏ ବୁଢ଼ା ।

ସତକୁ ସତ ଦିନ କେଇଟା ପରେ ଧଳାମୂଷାପଲ ରାଜି ହେଇଗଲେ ସେ ଗାଁ ଛାଡ଼ି ଚାଲିଯିବାକୁ । ଦିନକାଳ ଠିକଣା ହୋଇଗଲା ସେମାନେ ଯିବେ ବୋଲି ।

ସେଇଠୁ ବୁଢ଼ା ମାଟିଆମୂଷା କହିଲା, ''ଏଥର ଚାଲ ଗାଁ ମଝିରେ ପୁଣି ଖୁଣ୍ଟାଏ ପୋତି ଦବା । ତା' ଉପରେ ନୂଆ ମାଟିଆ ପତାକା ଉଡ଼େଇ ଦବା । ମନେରଖ, ଏଇ ପତାକା ତଳେ, କେହି କଳି କଜିଆ ନ କରି ଆମେ ଏକାଠି ହବା, ତେବେ ଆମକୁ କେହି ଡରେଇ ପାରିବେନି ।''

''ମାଟିଆ ପତାକା ଆମର ଚିହ୍ନ । ଆମେ ସବୁ ଏକ । ମନେ ରଖିଲ ତ !''

ସେଇଦିନୁ ଆଜିଯାଏଁ ମୂଷାଗାଁରେ ମାଟିଆ ପତାକାଟି ଉଡୁଚି ଫରଫର ହେଇ ।



# କଇଁଫୁଲର ହସ

ଛୋଟ ଗାଆଁଟିଏ । ସେଇ ଗାଆଁରେ ଥାଏ ଗୋଟିଏ ସାନ ପିଲା । ତା' ନାଆଁଟି 'ଭାଗୁ' ।

'ଭାଗୁ' ବଡ଼ ସଫା ସୁତୁରା । ଦେଖିବାକୁ ଖୁବ୍ ଡଉଲ ଡାଉଲ । ସେ ଗଛ ପତର, ପଶୁ ପକ୍ଷୀ, ସଭିଙ୍କୁ ଭଲ ପାଏ । ହେଲେ ତାକୁ ସବୁଠୁ ବେଶି ଭଲ ଲାଗେ ଫୁଲ । ଦୁନିଆଁ ଯାକରେ ଯେତେ ଫୁଲ ଅଛି ସବୁ ଭଲ ଲାଗେ ଭାଗୁକୁ । ଧଳା ହେଉ କି ବାଇଗେଣୀ ହେଉ, ବାସ୍ନା ହେଉକି ନ ହେଉ, ଫୁଲ ଦେଖିଲେ ସେ ଆନନ୍ଦରେ ହାତତାଳି ଦେଇ ନାଚକରେ । ତା ଛବିଖାତାରେ ସେଇଥିପାଇଁ ସେ ନାନା ଜାତି ଫୁଲମାନଙ୍କର ଛବି ଆଙ୍କେ ।

ସବୁ ଫୁଲଙ୍କୁ ଭାଗୁସିନା ଭଲପାଏ, ହେଲେ କଇଁଫୁଲ ପାଇଁ ସେ ପାଗଳ । ନୀଳକଇଁ ଫୁଲଟିଏ କୋଉଠି ଫୁଟିଥିବାର ଦେଖିଲେ ସେ ସେଇଠି ଅଟକି ରହେ । ତା'ର ମନ ତାଙ୍କ ବାଡ଼ିରେ ଗୋଟେ ଛୋଟ ଗାଡ଼ିଆ ଥାଆନ୍ତା କି । ସେଥିରେ ଖାଲି ଏଇମିତି କୁନି କୁନି ନୀଳକଇଁଫୁଲ ଫୁଟିଥାଆନ୍ତା ଚାରିଆଡ଼େ । ତାହେଲେ ସେ ବାଡ଼ିପଟେ ବସି ବସି କଇଁଫୁଲମାନଙ୍କୁ ଦେଖନ୍ତା ।



କାହିଁକି କେଜାଣି, ଭାଗୁକୁ ଲାଗେ ନୀଳକଇଁଫୁଲ ଯେମିତି ତା'ର ସବୁଠୁ ବଡ଼ ସାଙ୍ଗ ।

ଭାଗୁ ଚାଟଶାଳୀକୁ ଯାଇ ଆଗରୁ କ'ଣ ସବୁ ଶିଖିଥିଲା । ଏବେ ଟିକେ ବଡ଼ ହୋଇଗଲାଣି । ଏଇ ବରଷ ପ୍ରଥମ ଶ୍ରେଣୀରେ ନାଆଁ ଲେଖେଇଛି । ସିଲଟ, ଖଡ଼ି, ଖାତା, ପେନ୍‌ସିଲ୍, ବହିଧରି ସେ ଏବେ ସ୍କୁଲକୁ ଯାଉଚି । ସବୁଦିନ ସକାଳୁ ସେ ଗାଆଁ ମୁଣ୍ଡ ସ୍କୁଲକୁ ଯାଏ । ତା'ର ସାଙ୍ଗମାନେ ବି ଯାଆନ୍ତି । ଯାଉ ଯାଉ ବାଟରେ ଗାଆଁ ପୋଖରୀ ପଡ଼େ । ପୋଖରୀ ଆରପଟେ ଅଛି ଗୋଟେ ଛୋଟ ଗଡ଼ିଆ । ସେଇ, ସ୍କୁଲକୁ ଯିବା ବାଟ କଡ଼ରେ । ଗଡ଼ିଆ ପାଖରେ ଆମ୍ବଗଛ ଅଛି । ଯାଉ ଯାଉ ଖରାକାଟିଲେ, ଭାଗୁ ସେଇ ଆମ୍ବଗଛ ମୂଳେ ଟିକେ ଠିଆହୋଇ ପଡ଼େ ।

ଦିନେ ସ୍କୁଲକୁ ଗଲାବେଳେ ଭାଗୁ, ଗଡ଼ିଆପାଖ ଆମ୍ବଗଛ ମୂଳେ ଟିକେ ଠିଆହୋଇ ପଡ଼ିଲା । ଗଡ଼ିଆ ଆଡ଼କୁ ଚାହିଁ ଖୁସିରେ ତା' ମନ ନାଚି ଉଠିଲା । ''ଆରେ ହେ ! ସେଠି ଗୋଟେ କଇଁଫୁଲ ଫୁଟିଚି । କାଇଁ ଆଉ କେଉଁଠି ତ କଇଁଫୁଲ ଫୁଟିନି । ଏଠି କେମିତି ଫୁଟିଲା ?'' ବହୁତି ସମୟଯାଏଁ ଭାଗୁ ଚାହିଁଲା ସେଇ ଆଡ଼କୁ । ତା'ର ଇଚ୍ଛା ହଉ ନ ଥାଏ ସ୍କୁଲକୁ ଯିବାକୁ ।





ସତକଥା । ସ୍କୁଲକୁ ଯିବାକୁ ଭାଗୁର ମୋଟେ ଇଚ୍ଛାହୁଏନି । ତା'ର ଇଚ୍ଛା ସ୍କୁଲକୁ ନ ଯାଇ ଖାଲି ଏମିତି ବୁଲନ୍ତା, ଡିଅଁନ୍ତା, ଖେଳନ୍ତା । ସିଲଟ ଧରିଲେ, ଭାଗୁର ମନ ଇଆଡ଼େ ସିଆଡ଼େ ଧାଏଁ ।

ସେଦିନ କ'ଣ ଭାଗୁ ଆଉ ସ୍କୁଲକୁ ଗଲାକି ? ସେ ସେଇଠି ବସି ରହିଲା । ନୀଳକଇଁଫୁଲକୁ ଦେଖିଲା । ଗଛମୂଳେ ଖେଳିଲା । ପଥର ଗୋଟେଇ ପଡ଼ିଆ ଆଡ଼କୁ ଜୋରରେ ଫୋପାଡ଼ିଲା । ପାଣି ଭିତରକୁ ଛୋଟ ଛୋଟ ଗୋଡ଼ି ଫୋପାଡ଼ି, ଟୁପ୍ ଟୁପ୍ ଶବ୍ଦ ବସି ଶୁଣିଲା । ପାଟିରେ ଟକର ଟକର ଟାକରା ଫୁଟେଇ ଗଛରେ ବସିଥିବା ଚଢ଼େଇମାନଙ୍କୁ ଉଡ଼ାଇଲା । କିନ୍ତୁ ସ୍କୁଲକୁ ଗଲାନି । ଯେମିତି ଛୁଟିବେଳ ହେଲା, ସେଇଠୁ ସେ ଫେରିଗଲା ଘରକୁ ।

ତା'ପର ଦିନ ପୁଣି ସେଇକଥା । ଭାଗୁଦେଖିଲା ଗଡ଼ିଆରେ କଇଁଫୁଲ ଫୁଟିଚି । ଗଛମୂଳେ ବହି ବସ୍ତାନି ଥୋଇ ଗତଦିନ ଭଳି ସେ ପୁଣି ଖେଳିଲା । ବେଳ ହେଲାରୁ ସେମିତି ଘରକୁ ଫେରିଲା ।

ତା' ପରଦିନ ଭାଗୁ ଗଡ଼ିଆ କୂଳକୁ ଆସିଲା । ଦେଖିଲା ନୀଳକଇଁ ଫୁଟିଚି । ବହି ବସ୍ତାନି ଥୋଇ ଖେଳିବାକୁ ଯାଉଚି, ଏତିକିବେଳେ କିଏ କ'ଣ କହିବାପରି ତାକୁ ଲାଗିଲା । ସେ ଦେଖିଲା ନୀଳକଇଁଟି ଗଡ଼ିଆ କୂଳକୁ ଚାଲି ଆସିଚି । ସେଇଠୁ କଥା ଶୁଭୁଚି ।

ନୀଳକଇଁ ଭାଗୁକୁ କହିଲା–"ଭାଗୁ ! ତମେ ଜଣେ ଅତି ଭଲ ପିଲା । ମୁଁ ତୁମକୁ ବହୁତ ଭଲପାଏ । ମୋ କାମ ଯେମିତି ସୁନ୍ଦର ରୂପ ହୋଇ ଫୁଟିବା, ତୁମର କାମ ସେମିତି, ଏଇ ବୟସରେ ପାଠ ପଢ଼ିବା, ଆଉ ବଡ଼ମାନଙ୍କର କଥାମାନି ଚଳିବା । ଯେଉଁ ସମୟରେ ଯୋଉ କାମ କରିବା କଥା, ତା' ନ କଲେ ସବୁଠି ହଇରାଣ ହବାକୁ ପଡ଼େ । ତମେ କାଲିଠୁ ସ୍କୁଲକୁ ନ ଗଲେ, ମନେରଖ ମୁଁ ଆଉ ଫୁଟିବିନି ।"

ବଡ଼ ଆଶ୍ଚର୍ଯ୍ୟ ଲାଗିଲା ଭାଗୁକୁ । ନୀଳକଇଁ ପୁଣି କଥା କହୁଚି । କାହିଁକି ସ୍କୁଲକୁ ଯାଇନାହିଁ ବୋଲି ଶୁଣିବା ପରଠାରୁ ବଡ଼ ଖରାପ ଲାଗିଲା ତାକୁ । ସେ ଆଉ କିଛି ନ କହି ଧାଇଁଲା ସ୍କୁଲ ଆଡ଼େ ।

ତା' ପର ଦିନ ସକାଳ । ଭାଗୁ ସେମିତି ଗଡ଼ିଆ କୂଳକୁ ଆସିଲା । ଭାବିଲା, ସେ ଅଜାଣତରେ ଭୁଲ୍‌କାମ କରିଚି ବୋଲି, ନୀଳକଇଁ ପାଖରେ ମାନିଯିବ ।

ହେଲେ ନୀଳକଇଁ କାଇଁ । ସେଦିନ ଆଉ ନୀଳକଇଁ ଫୁଟି ନଥିଲା ଗଡ଼ିଆରେ । ଭାଗୁର ମନ ବଡ଼ ଦୁଃଖ ହେଲା । ସେ ଚୁପ୍ ଚାପ୍ ଚାଲିଲା ସ୍କୁଲକୁ ।

ଉପରବେଳା ଭାଗୁ ଯେତେବେଳେ ପାଠପଢ଼ି ସ୍କୁଲରୁ ଫେରିଲା, ସେ ଦେଖିଲା ଗଡ଼ିଆକୂଳରେ ନୀଳକଇଁ ଫୁଟିଚି । ବାଃ ! କେତେ ସୁନ୍ଦର, ଆଉ କେତେ ବଡ଼ ଦିଶୁଚି ଆଜି ନୀଳକଇଁ !!

ଗଡ଼ିଆ କୂଳକୁ ଭାଗୁ ଯେମିତି ଯାଇଚି, ନୀଳକଇଁ ଫକ୍‌କିନା ଡେଇଁ ପଡ଼ିଲା ଭାଗୁହାତକୁ । ଡେଇଁ ପଡୁ ପଡୁ କଇଁଫୁଲ କହିଲା, ଯିଏ ସୁନାପିଲା ହୁଏ ମୁଁ ଏଇମିତି ତା ହାତକୁ ଡେଇଁ ପଡ଼େ । ଚାଲ ଏଥର ତମ ଘରକୁ ଯିବା ।"

ଆରେ ବାପ୍‌ରେ ! ଭାଗୁର କି ଆନନ୍ଦ ସେଦିନ କହିଲେ ନ ସରେ ।



# ଝୁମୁକା

କାଦୁଆପଡ଼ା ଗାଆଁରେ ଥାଆନ୍ତି ଦୁଇଜଣ ସାଙ୍ଗ । କୁନା ଆଉ ମୁନା । ଦୁହେଁ ଦୁହିଁଙ୍କୁ ବହୁତ ଭଲ ପାଆନ୍ତି । ସେମାନେ ଏକାଠି ସାଙ୍ଗହୋଇ ଖେଳନ୍ତି, ବୁଲନ୍ତି, ଗୀତ ଗାଆନ୍ତି ।

କୁନା, ମୁନାଘରକୁ ଆସେ । ମୁନା କୁନାଘରକୁ ବୁଲିବାକୁ ଯାଏ । ଦୁଇଜଣଙ୍କର ସବୁକଥାରେ ଏକ ମନ । ହେଲେ ଗୋଟେ କଥା । କୁନା କେବେ ରାଗେନା, ଅଥଚ ମୁନା, ଟିକିଏ କଥାରେ ରାଗିଯାଏ । ନ ହେଲେ ଆଉସବୁ ଭଲ ।

ଦିନକର କ'ଣ ହେଇଚିନା, କୁନାର ବାପାଯାଇଥିଲେ ଗୋଟେ ଦୂରଗାଆଁକୁ । ଆସିଲାବେଳେ ବାଟରୁ ଝୁମୁକାଟିଏ ଆଣି ଦେଇଥିଲେ କୁନା ପାଇଁ । ଭାରି ସୁନ୍ଦର ଝୁମୁକାଟିଏ । ତାଳପତ୍ରରେ ତିଆରି । ତା' ଦେହରେ ନାଲିନେଳି ରଙ୍ଗ ଦିଆହୋଇଥାଏ । କେତେ ବଢ଼ିଆ, କୋଠି କୋଠି ହେଇ ରଙ୍ଗ । ଝୁମୁକାଟିକୁ ହଲେଇଲେ ଝୁମୁରୁ ଝୁମୁରୁ ବାଜେ ।





ବାପାଙ୍କ ହାତରୁ କୁନା ଝୁମୁକାଟି ଯେମିତି ପାଇଚି, ସେମିତି ମାରିଲା ଗୋଟେ ଡିଆଁ ମୁନାଘରକୁ । ମୁନାକୁ ନୂଆ ଖେଳଣାଟା ନ ଦେଖେଇଲେ ସେ ଆଉ ଦେଖେଇବ କାହାକୁ ?

ବାଟସାରା ଝୁମୁରୁ ଝୁମୁରୁ ବଜେଇ ଚାଲିଥାଏ କୁନା । ମୁନାଘରେ କୁନା ପହଞ୍ଚିଲାବେଳକୁ, ମୁନା ଠିଆହେଇଥିଲା ଅଗଣାରେ । କୁନା ହାତରେ କ'ଣ ଗୋଟେ ନୂଆଖେଳଣା ଦେଖି, ମୁନା ଦଉଡ଼ିଆସିଲା ପାଖକୁ ।

କୁନା ଭାବୁଥିଲା, ମୁନାକୁ ବୁଝେଇ କହିବ, କେମିତି ଏ ଝୁମୁକାଟି ବାପା ଗୋଟେ ଦୂର ଗାଆଁରୁ କିଣି ଆଣିଛନ୍ତି ତା' ପାଇଁ । ଉପରୁ ତଳ କଲେ ଗୋଟେ ପ୍ରକାର ଆଉ ଏପଟୁ ସେପଟ କଲେ କେମିତି ଆଉ ଗୋଟେ ପ୍ରକାର ବାଜୁଚି ସେଇଟା । ଉପରୁ ତଳକଲେ ଝଣର ଝଣର ଆଉ ଏପଟୁ ସେପଟ କଲେ ଝୁମୁରୁ ଝୁମୁରୁ ଶୁଭୁଚି ।

ହେଲେ କୁନା କିଛି କହିବା ଆଗରୁ ମୁନା ତା' ହାତରୁ ଝୁମୁକାଟାକୁ ଛଡ଼େଇବାକୁ ଲାଗିଲା ।

କୁନା କହୁଛି, ''ରହ । ଆରେ ମୁନା ଟିକେ ରହ । ମୁଁ ତତେ ଦେବି ଯେ, ତୁ' ଟିକେ ଆଗ ଶୁଣ୍ । ମୁନା କାହିଁକି ଶୁଣିବ ? ଭିଡ଼ାଭିଡି କରି ସେ ଝୁମୁକାଟାକୁ ଛଡ଼େଇଲା କୁନାହାତରୁ ।''

ଦେଖୁ ଦେଖୁ ମଚ୍‌କିନା ଭାଙ୍ଗିଗଲା ଝୁମୁକାଟା । କୁନା ଚାହିଁଥାଏ ବିକଳରେ । ମୁନା ଚାହିଁଥାଏ ବୋକାଙ୍କ ପରି । କିଏ କ'ଣ ଜାଣିଥିଲା ଏମିତି ସେଇଟା ଭାଙ୍ଗଯିବ ବୋଲି ?

କ'ଣ ଆଉ କରିବ କୁନା । ମୁନା ତ ତା' ସାଙ୍ଗ । ତାକୁ ବଡ଼ କାନ୍ଦ ମାଡ଼ିଲା । ସେ ଦଉଡ଼ି ପଳେଇ ଆସିଲା ଘରକୁ ।

ଏଣେ ମୁନାର ମନଟା ବି ବଡ଼ ଖରାପ ହେଇଗଲା । କାହିଁକି ଭଲା କୁନା ହାତରୁ ସେ ଝୁମୁକାଟା ଛଡ଼ଉଥିଲା ! ଟିକିଏ ଅପେକ୍ଷା କରିଥିଲେ କ'ଣ ହେଇ ନ ଥାନ୍ତା ? କୁନାକୁ କେତେ କଷ୍ଟ ଲାଗି ନ ଥିବ ସତରେ । ନୂଆ ଝୁମୁକାଟା; ଆହା ବିଚରା କାନ୍ଦି କାନ୍ଦି ଗଲା ଘରକୁ ।

ସେଦିନ ମୁନା ଆଉ ବାହାରକୁ ମୋଟେ ଖେଳିବାକୁ ଗଲାନି । ମୁହଁକୁ ଶୁଖେଇ ବସିଲା । କୋଉ ମୁହଁନେଇ ସେ କୁନା ପାଖକୁ ଯିବ ଅବା ? ବାପା, ମାଆ, ଭଉଣୀ ଯିଏ ଯେତେ ପଚାରିଲେ ସେ କିଛି, ଉତ୍ତର ଦେଲାନି । ସେଇଭଳି ସାରା ସଂଜବେଳଟା ବସି ରହିଲା ଚୁପ୍‌ଚାପ୍ ।

ଖାଇଲାବେଳେ ଭଙ୍ଗା ଝୁମୁକା କଥା ମନେ ପଡ଼ି ଯାଉଥାଏ ତା'ର । କୁନାର କାନ୍ଦୁରା ମୁହଁଟା ଦିଶିଯାଉଥାଏ ତୁହାକୁ ତୁହା ।

ରାତିରେ ମୁନା ଶୋଇଥାଏ ।



ନିଦରେ ସେ ଦେଖିଲା ଗୋଟେ ଅଜଣା ରାସ୍ତାରେ ସେ ଚାଲିଚି । ଚାରିଆଡ଼େ ଶୂନ୍‌ଶାନ୍ । କେମିତି ଛାଇ ଛାଇ ଅନ୍ଧାର । ଗୋଟେ ଜାଗାରେ ସେ ଶୁଣିଲା କିଏ ଜଣେ ଉଃ..ଉଃ.. ହୋଇ କାନ୍ଦୁଛି । ସେ ଚାରିପଟକୁ ଚାହିଁଲା । ହଠାତ୍ କିଛି ଦେଖାଗଲାନି ତାକୁ । ନିଠେଇ ନିଠେଇ ଚାହିଁବାରୁ ସେ ଦେଖିଲା ରାସ୍ତାକଡ଼ରେ ଗୋଟେ ତାଳପତ୍ର ଝୁମୁକା ପଡ଼ିଚି । ତା' ଦେହ ଭାଙ୍ଗିଭୁଙ୍ଗି ଯାଇଛି । ସେଇଠୁ ବୋହୁଚି ରକ୍ତ ଧାରଧାର ହୋଇ । ଝୁମୁକାଟା ଗୋଟେ ଛୋଟ ପିଲାପରି ବିକଳ ହୋଇ ଉଃ..ଉଃ.. ଶବ୍ଦକରି କାନ୍ଦୁଛି ।

ଆଶ୍ଚର୍ଯ୍ୟ ଲାଗିଲା ମୁନାକୁ । ଝୁମୁକାର ବିକଳ କାନ୍ଦଣାଦେଖି ତାକୁ ବି କାନ୍ଦ ଲାଗିଲା । ସେ ସେଇଠି ଝୁମୁକା ପାଖରେ ବସି ପଡ଼ିଲା । ନିଜ ଆଖିରୁ ଲୁହ ବୋହି ଟପ୍ ଟପ୍ ଖସିପଡ଼ିଲା ଝୁମୁକା ଉପରେ । ସେ ଧୀରେ ଧୀରେ ଆଉଁସି ଦେଲା ଝୁମୁକାକୁ । ମୁନା ଭାବୁଥାଏ ଏଇଟା ବୋଧେ ଜୁନାର ସେଇ ଭାଙ୍ଗି ଯାଇଥିବା ଝୁମୁକା ।

ଖୁବ୍ ଅନୁତାପ ହେଉଥାଏ ମୁନାର ।

ଆରେ ଇଏ କ'ଣ ! ଆଉଁସୁ ଆଉଁସୁ ଝୁମୁକାଟା ଭଲ ହୋଇଗଲା ପୂରାପୂରି । ବାଃ ଭାରି ମଜା କଥା ତ ।

ଝୁମୁକାଟି ଭଲ ହୋଇଗଲାରୁ ମୁନାକୁ କହିଲା–''ବୁଝିଲ ମୁନାଭାଇ, ତୁମେ ନିଜର ଭୁଲ ବୁଝିପାରି ଅନୁତାପ କଲ ଆଉ ଲୁହ ଗଡ଼େଇଲ । ତେଣୁ ମୋ ଦିହ ଭଲ ହୋଇଗଲା । ହେଲେ ମନେରଖ'', କହି ଝୁମୁକା ଗୀତଟିଏ ଗାଇଲା—

ଛଡ଼ିଆ ଛଡ଼ି<br>
କରିବ ନାଇଁ<br>
କରିବ ନାଇଁ କଳି;<br>
କାହା ମନରେ<br>
ଦେବନି ଦୁଃଖ<br>
ଖେଳିବ ମିଶି ମିଳି ।

ଏମିତି ଗୀତ ଶୁଣୁ ଶୁଣୁ ହଠାତ୍ ମୁନାର ନିଦ ଭାଙ୍ଗିଗଲା । ସେ' ଦେଖିଲା ସକାଳ ହେଲାଣି । ତାଙ୍କ ଶୋଇବା ଘର ଝରକା ପାଖରେ ଘରଚଟିଆଟିଏ ବସି କିଚିରି ମିଚିରି ଗୀତ ଗାଉଚି ।

# ଟୁନିଆଁର ପିଜୁଳି ଲୋଭ

ନିତି ସକାଳୁ ଟୁନିଆଁ ଫୁଲ ତୋଳିବାପାଇଁ ବାହାରେ । ସକାଳୁ ଉଠି ଦାନ୍ତ ଘଷୁ ଘଷୁ ବୁଢ଼ୀମା ଡାକ ପକାନ୍ତି — ‘‘ଆରେ ଟୁନିଆଁ ଫୁଲ ଆଣିଲୁଣି ?’’ ସେଇଠୁ ଦାନ୍ତଘଷା କାମ ତରବରରେ ସାରିଦେଇ ଟୁନିଆଁ ଧାଏଁ ଫୁଲ ଆଣିବାକୁ ।

ସକାଳ ପାଇଲେ ବୁଢ଼ୀମାଙ୍କର ଫୁଲ ଦରକାର । ଭୋର୍ ନ ହେଉଣୁ ନଳରେ ପାଣି ଆସେ । ସଜ ପାଣିରେ ବୁଢ଼ୀମା ଗୋଧୋଇବାପାଇଁ ଭଲ ପାଆନ୍ତି । ଗାଧୋଇ ସାରିଲାପରେ ଠାକୁର ପୂଜା । ତେଣୁ ସେତେବେଳକୁ ଯଦି ଫୁଲ ନ ଆସିଚି, ତେବେ ବୁଢ଼ୀମା ଆଉ ରଖେଇ ବସେଇ ଦେବେନି ।

ଟୁନିଆଁର ବାପା ଭୁବନେଶ୍ୱରରେ ସରକାରୀ ଚାକିରି କରନ୍ତି । ତାଙ୍କୁ ସରକାରୀ ଘର ମିଳିଚି । ଉପର ତଳ ହେଇ ମହଲା ମହଲା ଠିଆହୋଇଥିବା କୋଠାଘର । ଟୁନିଆଁ ବାପାଙ୍କୁ ଘର ମିଳିଚି ତିନିମହଲାର, ସବା ଉପରେ । ଦୁଇ ବଖୁରିଆ ଘର । ସେତିକି ଭିତରେ ବାପା, ବୋଉ, ଅପା, ଟୁନିଆଁ, ବୁଢ଼ୀମା, ପୋଷା ବିଲେଇ ‘‘କୁତୁରୀ’’, ସମସ୍ତେ ରହନ୍ତି । ଉପର ମହଲା ଘରେ ଫୁଲ କୋଉଠୁ ଆସିବ ? ଏତେ ଟିକିଏ ବାଲ୍‌କୋନୀ ଅଛି । ସେଥିରେ ସିମେଣ୍ଟ ଚଉରାଟିଏ ହେଇଚି । ଫୁଲକୁଣ୍ଡ ଗୋଟିଏ ବି ନାଇଁ । ଜାଗା ବି ନାଇଁ କୋଉଠି ରଖିବାକୁ ।



ତେଣୁ ଟୁନିଆଁ ତଳମହଲା ଘରମାନଙ୍କ ବଗିଚାରୁ ବୁଲି ବୁଲି ଫୁଲ ତୋଳିଆଣେ । ବାଡ଼ମାନଙ୍କରେ ଟଗର, ତରାଟ ଗଛ ସବୁ ଲାଗିଚି । ସେଥିରୁ ଫୁଲ ଆଣିଲେ କେହି କିଛି କହନ୍ତିନି । ମାତ୍ର ବଗିଚାରେ ପଶି କୁଣ୍ଡଗଛ ବା ଭିତରର ସୌଖୀନ୍ ଫୁଲରେ ହାତ ମାରିଲେ ଘରବାଲା ରାଗ ହୁଅନ୍ତି । ସେଥିପାଇଁ ଟୁନିଆଁ କାହା ହତା ଭିତରେ ପଶେନା ।

ଥରେ ଏଇମିତି ପଶିଯାଇ ଗୋଲାପ ଫୁଲ ଦିଇଟା ତୋଳି ପକେଇଥିଲା । ସେଦିନ ସେ ଘରର ମାଉସୀ କେତେ କଥା କହିଲେ । ସେମିତି କଲେ ବାଡ଼ କନିଅର ଗଛରୁ ବି ଫୁଲ ତୋଳିବାକୁ ମନାକରିଦେବେ ବୋଲି ଧମକ୍ ଦେଇଥିଲେ ।

ତେଣୁ ଟୁନିଆଁ ଭିତର ଫୁଲରେ ହାତ ଦିଏନା ।

ଏଇମିତି ଦିନେ ଫୁଲ ତୋଳୁ ତୋଳୁ ଟୁନିଆଁ ଦେଖିଲା ଗୋପାଳ ବାବୁଙ୍କ ବଗିଚା ଭିତର ପିଜୁଳି ଗଛରେ ବଡ଼ିଆ  ପିଜୁଳି ହେଇଚି । ଏଡ଼େ ଏଡ଼େଟାମାନ ତୋଫାଳିଆ ପିଜୁଳି । ଟୁନିଆଁର ମନ ହାଇଁପାଇଁ ହେଲା । ଆହା ମିଳିଯାଆନ୍ତା କି ଗୋଟେ ଦୁଇଟା ! ଦାନ୍ତ ବସେଇ ଦେଲେନା ରଟ୍‌କିନା ଦିଫାଳ ହେଇଯିବ ଏକାଥରକେ ।

ଟୁନଆଁର ପିଜୁଳିରେ ଭାରି ଲୋଭ । ଅଜାଘର ଗାଁକୁ ଗଲେ ସେଥିପାଇଁ ସେ ସଂଜେ ସକାଳେ ପିଜୁଳି ଗଛରେ ଚଢ଼ି କୁଷିମସି ଦରାଣ୍ଡୁଥାଏ ।





ଗୋପାଳ ମଉସା ବାପାଙ୍କର ଚିହ୍ନା । ଆଠ ନମ୍ବର ହାଇସ୍କୁଲରେ ଶିକ୍ଷକ ଅଛନ୍ତି । ତାଙ୍କ ବଡ଼ ପୁଅ ସୋମଭାଇ ଟୁନିଆଁକୁ ବି ଚିହ୍ନନ୍ତି । ହେଲେ ଏତେ ଯିବାଆସିବା ନାଇଁ ଦୁଇଘର ଭିତରେ ।

ଟୁନିଆଁ କେମିତି ପିଜୁଳି ଖାଇବ ? ମନଟା ତା'ର ଛକପକ ହଉଥାଏ ।

ସେ ଭାବିଲା ଦିନେ ଭୋର୍ ସକାଳୁ ଆସିବ । କେହି ଉଠି ନ ଥିବା ବେଳେ ଫୁଲ ତୋଳିବା ବାହାନାରେ ପିଜୁଳି ଦୁଇଟା ତୋଳି ମାରିବ ଚମ୍ପଟ୍ । କେହି ଜାଣିପାରିବେନି । ଚୋରୀ କରିବା ଖରାପ କଥା କିନ୍ତୁ ଲୋଭ ସମ୍ଭାଳି ପାରିଲାନି ଟୁନିଆଁ ।

ଶୀତ ଦିନିଆଁ ସମୟ । ଦିନେ ସତକୁ ସତ ପୂରା ସକାଳ ନ ପାଉଣୁ ଉଠିପଡ଼ିଲା ସେ । ଫୁଲ ତୋଳିବା ପାଇଁ ଚାଙ୍ଗୁଡ଼ି, ଧରି ବାହାରି ପଡ଼ିଲା । ବୋଉ କହିଲେ ଆରେ ଏତେ ସକାଳୁ କୁଆଡ଼େ ଯାଉଚୁ ? ଟୁନିଆଁ ଉତ୍ତର ଦେଲା, ''ତୁ ଜାଣିନୁ କି ବଡ଼ି ସକାଳୁ ନ ଗଲେ ଆଉ ଫୁଲ ମିଳୁନି । କାଲି ପରା ବହୁତ କଷ୍ଟରେ ଦୁଇ ଚାରିଟା ଫୁଲ ଆଣିଥିଲି ।''

ଏତିକି କହି ମୁହଁ ଅନ୍ଧାର ଭିତରେ ଟୁନିଆଁ ଓହ୍ଲେଇ ଆସିଲା ତଳକୁ ।

ଗୋପାଳ ବାବୁଙ୍କ ବଗିଚା ପାଖରେ ଆସି ଦେଖିଲା ସବୁଆଡ଼େ ଶୂନ୍‌ଶାନ୍ । କେହି ଉଠି ନାହାନ୍ତି । ବଗିଚାର ଭଙ୍ଗା କାଠ ଫାଟକଟା ଖାଲି ଆଉଜା ହେଇ ରହିଚି । ଧୀରେ ଧୀରେ ଭିତରେ ପଶି ସେ ଚଢ଼ିଗଲା ପିଜୁଳି ଗଛରେ । କାକର ପଡ଼ି ଗଛର ଗଣ୍ଡି ଖସଡ଼ା ହେଇଥିଲା, ହେଲେ ଟୁନିଆଁକୁ କୋଉ ବଳଉଚି ?

ଚାରିଟା ଖଣ୍ଡେ ତୋଳି ପକେଟ୍‌ରେ ପୂରେଇଚି, ତଳକୁ ଚାହିଁଦେଇ ତାର ହଲକ୍ ଶୁଖିଗଲା । କେତେବେଳେ ଘରର ଲାଇଟ୍ ଜାଳି ଝରକାପାଖରେ ଗୋପାଳ ମଉସା ତାକୁ ଚାହିଁଚନ୍ତି, ସେକଥା ସେ ମୋଟେ ଜାଣିପାରିନି । କ'ଣ ଆଉ କରିବ ? ମୁଣ୍ଡ ଘୂରେଇ ଦେଲା ତା'ର । ପ୍ରାଣ ବିକଳରେ ତଳକୁ ଓହ୍ଲାଇ ଆସିଲା । ଛାତି ଧଡ଼ପଡ଼ କରୁଥାଏ । ଝରକା ଛାଡ଼ି ଗୋପାଳ ବାବୁ ବୋଧେ ବାହାରକୁ ଆସିବା ପାଇଁ କବାଟ ଫିଟେଇଲେ । ଟୁନିଆଁ କି ଆଉ ସେଠି ରହେ ? ଫୁଲ ଚାଙ୍ଗୁଡ଼ିଟା ତଳୁ ଗୋଟେଇ ମାରିଲା ଛୁ ।

ଘରେ ପହଞ୍ଚିଲାବେଳକୁ ତା ଗୋଡ଼ହାତ ଥରୁଥାଏ । ବୁଢ଼ୀମାକୁ ମିଛରେ କହିଦେଲା ଯେ ଆଜି କୋଉଠି ଗୋଟେ ବି ଫୁଲ ମିଳିଲାନି । ବୁଢ଼ୀମା ଟିକେ ଚିଡ଼ି ଚିଡ଼ି ହେଲେ । ହେଲେ ଟୁନିଆଁ ଚୁପ୍‌ଚାପ୍ ଯାଇ ବସିଲା ପଢ଼ା ଟେବୁଲ୍ ପାଖରେ । ତା'ର ଭାରି ଡର । ଗୋପାଳ ମଉସା ବାପାଙ୍କୁ କହିଦେବେ ଯଦି । ଘରକୁ ଆସି 'ତୁମ ପୁଅ ଆମ ଗଛରୁ ଚୋରୀ କରୁଥିଲା କହି' ଯଦି ସେ କଳିକରିବାକୁ ଆସିବେ ? ତେବେ କ'ଣ ହବ ତା'ର ଅବସ୍ଥା ?

କୋଉଥିରେ ଆଉ ମନ ଲାଗୁନଥାଏ ଟୁନିଆଁର । ସ୍କୁଲକୁ ସେ ଗଲା ସିନା ହେଲେ ଦିନସାରା ପିଜୁଳି ଚୋରୀର ଭୟ ମାଡ଼ିବସିଲା ତାକୁ ।

ଉପରବେଳା ଖେଳିବାକୁ ସେ କୁଆଡ଼େ ଗଲାନି । ଚୁପ୍‌ଚାପ୍ ମନମାରି ବସି ରହିଲା ଘରେ । ଯିଏ ଯାହା ପଚାରିଲା, କିଛି ଉତ୍ତର କଲାନି । ସେ ଭାବୁଥାଏ ଗୋପାଳ ମଉସା ଆସିବେ ଯଦି ସେ କ'ଣ କରିବ ?





ସ୍ୱତକୁ ସତ ସଂଜବେଳକୁ ଆସିଲେ ଗୋପାଳ ମଉସା । ଆଗରୁ ତ କେବେ ଆସନ୍ତିନି । ବାପା ତାଙ୍କୁ କବାଟ ପାଖରେ ଦେଖୁ ଦେଖୁ ଆଦର କରି ଡାକି ଆଣିଲେ ଘରକୁ । ସେତେବେଳେକୁ ଟୁନିଆଁ ବାଟ ପାଖରେ ଥିଲା, ଗୋପାଳ ବାବୁଙ୍କ ନାଁ ଯେମିତି ସେ ଶୁଣିଚି, ତା' ଛାତି ଖାଲି ପଡ଼ିଲା ଉଠିଲା । ପାଖ ବଖରାକୁ ପଳେଇଗଲା ସିଏ ।

ବାପା ଆଉ ଗୋପାଳ ମଉସାଙ୍କ କଥା ସେ କାନପାରି ଶୁଣିବାକୁ ଚେଷ୍ଟା କଲା ।

ଗୋପାଳ ବାବୁ କହୁଥିଲେ, ''ବୁଝିଲେ ବିରଞ୍ଚିବାବୁ ! ଆମ ପିଜୁଳି ଗଛରେ ଏ ବର୍ଷ ଢେର ପିଜୁଳି ଆସିଚି । କିଏ କେତେ ଖାଇଲେଣି ତା'ର ଠିକଣା ନାଇଁ । ମୁଁ ଜାଣିଚି ଟୁନିଆଁକୁ ପିଜୁଳି ଖୁବ୍ ଭଲଲାଗେ । ସେଥିପାଇଁ ଏ ବ୍ୟାଗ୍‌ରେ ଚାରି ଛଅଟା ପିଜୁଳି ତା' ପାଇଁ ଆଣି ଦେଇଚି । କୁଆଡ଼େ ଗଲା ଟୁନିଆଁ ? ଘରେ ନାଇଁକି ?''

ଟୁନିଆଁ ଆଖିରେ ସେତେବେଳକୁ ଡବଡବ ଲୁହ । ଗୋପାଳ ମଉସା କେତେ ଭଲ ଲୋକ ! ଆଉ ସେ ନିଜେ କେତେ ଖରାପ !

ତା'ର ଇଚ୍ଛା ହେଉଥିଲା ଗୋପାଳ ମଉସାଙ୍କ ଗୋଡ଼ତଳେ ପଡ଼ି ସବୁଦୋଷ ମାନିଯିବାକୁ ।

ଗୋପାଳ ମଉସା କିନ୍ତୁ କ'ଣ କାମ ଅଛି କହି ଅଳ୍ପସମୟ ପରେ ଚାଲିଗଲେ । ଟୁନିଆଁ ମନକୁମନ କହିଲା– ''ମୁଁ ଆଉ କେବେ ବି ସେମିତି କାମ କରିବିନି ।''

# ଚିପିରି, ଛିପିରି, ଜିପିରି

ଗୋଟେ ପାହାଡ଼ ଥାଏ ଗୋଟେ ଜାଗାରେ । ଆରେ ବାପ୍‌ରେ, ଏଡ଼େ ବଡ଼ ପାହାଡ଼ ଯେ, ତା ଉପରକୁ ଚଢ଼ିବା ଭାରି କଷ୍ଟ । ସେଥିରେ ଥାଏ ଅନେକ ଗୁଡ଼େ ଗାଡ଼ । ଆଉ ସେଇ ଗାଡ଼ମାନଙ୍କରେ ରହୁଥାନ୍ତି କେତେନା କେତେ ଭାଲୁ । ସେମାନଙ୍କ ଭିତରେ ଅନେକ ବାପା ଭାଲୁ, ମାଆ ଭାଲୁ ଓ ପିଲାଭାଲୁ ବି ଥାଆନ୍ତି ।

ସେଇସବୁ ଗାଡ଼ ଭିତରୁ ଗୋଟେ ଗାଡ଼ ଭିତରେ ଥିଲେ ଗୋଟିଏ ଭାଲୁ ଘର । ବାପା ଭାଲୁ ନାଆଁ ଧୂସା । କାହିଁକି ନା ତା' ଦିହର ରଙ୍ଗ ମାଟିଭଳି ଧୂସର । ମାଆଭାଲୁ ମୁଣ୍ଡରେ ଏକ ଧଳାଦାଗ ଥିବାରୁ ତା' ନାଆଁ ଚାନ୍ଦୀ । ଧୂସା ଆଉ ଚାନ୍ଦୀଙ୍କର ସାନସାନ ହେଇ ତିନିଗୋଟି ଝିଅ । ବଡ଼ ଝିଅ ନାଆଁ ଚିପିରି, ମଝିଆଁ ନାଆଁ ଛିପିରି । ଆଉ ସବା ସାନଝିଅ ନାଆଁ ଜିପିରି ।





ଧୂସା ଆଉ ଚାନ୍ଦୀ, ତାଙ୍କ ତିନି ଝିଅଙ୍କୁ ଭାରି ଭଲ ପାଆନ୍ତି । ଝିଅମାନେ ବହୁତ ଭଲ । ମନଦେଇ ପାଠପଢ଼ନ୍ତି । ଭଲ ଖେଳକୁଦ କରନ୍ତି । ଦେଖିବାକୁ ସେମାନେ ବଡ଼ ସୁନ୍ଦର । କଳା ମଚମଚ ଦିହ । ମୋଟା ମୋଟା ଚେହେରା ।

ହେଲେ କ'ଣ ହବ ସେମାନେ ସମସ୍ତେ ବଡ଼ ଅମାନିଆଁ । ମନାକଲେ ବି ଇଆଡ଼େ ସିଆଡ଼େ ଦଉଡ଼ି ପଳାନ୍ତି । ବାପାମାଆଙ୍କୁ ଲୁଚେଇ ପାହାଡ଼ରେ ଥିବା ବଣବୁଦାରେ ଯାଇ ବୁଲନ୍ତି । ଅନ୍ୟଭାଲୁମାନଙ୍କର ବାଡ଼ିରୁ ଫଳଖାଆନ୍ତି । କୋଳି ତୋଳି ଆଣନ୍ତି । ବାପାମାଆଁ ଘରେ ନ ଥିଲେ, ଖରାବେଳ ସାରା ପଥର ଉପରେ ଗଡ଼ନ୍ତି । ବରଷା ଶୀତ ମାନନ୍ତିନି ।

ଥରକର କଥା । ବାପା ଭାଲୁ ଆଉ ମାଆ ଭାଲୁଙ୍କର ପାହାଡ଼ ଆରପଟେ ଥିବା ଜଣେ ସାଙ୍ଗ ଘରକୁ ଯିବାର ଥାଏ । ସେମାନେ ଚିପିରି, ଛିପିରି, ଜିପିରିଙ୍କୁ ପାଖକୁ ଡାକିଲେ । କହିଲେ ଦେଖ, ଦିପହର ବେଳ । ମେଘ ଟିକେ ଉଠେଇଲାଣି । ତୁମେମାନେ ସବୁ ଖାଇ ସାରିଚ । ଟିକେ ଟିକେ ଶୋଇପଡ଼ । ଉପରବେଳା ହେଲେ ବାହାରକୁ ବାହାରି ଖେଳିବ । ଆମେ ଯାଇ ଘଣ୍ଟାକ ଭିତରେ ଫେରିଆସିବୁ ।

ମନେରଖ, କାହାକୁ କବାଟ ଖୋଲିବ ନି କି ବରଷା ହେଲେ ପଦାକୁ ଗୋଡ଼ କାଢ଼ିବନି ।

ଏତିକି କହିଦେଇ ବାପାଭାଲୁ, ମାଆଭାଲୁ ଚାଲିଗଲେ । ଏଥରକ ଚିପିରି, ଛିପିରି, ଜିପିରିଙ୍କ ଖୁସି ଆଉ ଦେଖେ କିଏ !

କଳାମେଘ ଘୋଟିଥାଏ ଆକାଶରେ । ସେମାନେ ଘରଭିତରେ ରହିବେ କ'ଣ କବାଟ ଆଉଜେଇ ଦେଇ ଡିଆଁମାରି ବଣଭିତରକୁ ପଳେଇଲେ କୋଳି ଖାଇବାପାଇଁ । ଗୋଟେ ଝଙ୍କାଳିଆ ଜାମୁକୋଳି ଗଛଦେଖି ଚିପିରି, ଛିପିରି ଚଢ଼ିଗଲେ ଉପରକୁ । ମନଇଚ୍ଛା ହଲେଇଲେ ଡାଳ । ଟପ୍‌ଟାପ୍ ହେଇ ତଳେ ଗଦେଇ ହେଇ ପଡିଲା କୋଳି । ଜିପିରିତ ତଳେଥିଲା, ଯାହା ପାଇଲା ମଇଳା ଅସନା କିଛି ନ ମାନି ମାସୁ ମାସୁ କରି ଖାଇଗଲା କେତେ ନା କେତେ କୋଳି । ଏତେ କୋଳି ଖାଇଦେଲା ଯେ, ଏଡ଼େ ବଡ଼ ପେଟ ହେଇଗଲା ତା'ର । ଏଣେ ଚିପିରି, ଛିପିରି ଓହ୍ଲେଇଛନ୍ତି କି ନାଇଁ, ମାଡ଼ି ଆସିଲା ବରଷା । ନଳରୁ ଖସିଲା ପରି ପାଣି, ପବନ ସହ ସାଉଁ ସାଉଁ ହେଇ ଖସିଲା ଆକାଶରୁ । ଚିପିରି, ଛିପିରି ଆଉ କୋଳି ଖାଇବେ କ'ଣ ? ଗୋଟାପଣେ ଓଦାହେଇ ଧାଇଁଲେ ଘରକୁ । କୋଉ ଆସି ହଉଚି ? ଖସଡ଼ା ବାଟ । ଘରେ ପହଞ୍ଚିଲାବେଳକୁ ଓଦାରେ ସମସ୍ତଙ୍କ ଦିହ ଥରିଲାଣି । କ'ଣ କରିବେ ! ତିନି ଭଉଣୀଯାକ ଆଗ ଝାଡ଼ିଝୁଡ଼ିହେଇ ପୋଛିପାଛି ହେଇଗଲେ । କାଳେ ବାପା ମାଆ ଆସି ଦେଖିବେ ବୋଲି, ଘୋଡ଼େଇ ପୋଡ଼େଇ ନିଦରେ ଶୋଇପଡ଼ିଲେ ସମସ୍ତେ ।





ବାପାଭାଲୁ ମାଆଭାଲୁ ଫେରିଲେ । ସଂଜହେଲା । ଏତିକି ବେଳକୁ ଚିପିରି ଜରରେ ଥରଥର ହେଇ କମ୍ପିବାକୁ ଲାଗିଲା । ତେଣେ ଛିପିରି ଖଅଁ ଖଅଁ କାଶି ସର୍ଦ୍ଦିକାଶରେ ପଡ଼ିଥାଏ ବିକଳ ହେଇ । ତା' ନାକ କାନରୁ ପାଣି ବୋହି ପଡୁଥାଏ । ଶେଷକୁ ଜିପିରି ଅବସ୍ଥା ଆହୁରି ଖରାପ ହେଇଗଲା । ସେ ଖାଲି ଧାଉଁଥାଏ ପାଇଖାନାକୁ । ତା'ର ଏତେଥର ଝାଡ଼ା ହେଲା ଯେ ସେ ଆଉ ଶୋଇବା ଥାନରୁ ଉଠିପାରିଲାନି ।

ଝିଅମାନେ ବରଷାରେ ଭିଜିବାକଥା ବାପାଭାଲୁ, ମାଆଭାଲୁ ଜାଣିଲେ । ହେଲେ କରିବେ କ'ଣ ? ସେମାନେ କାନ୍ଦିପକେଇଲେ ପିଲାମାନଙ୍କର କଷ୍ଟ ଦେଖି । ବାପାଭାଲୁ ଧାଇଁଲା ଡାକ୍ତର ଡାକି । ସେଇ ପାହାଡ଼ରେ ଥାଏ ମାଙ୍କଡ଼ ଡାକ୍ତର । ଡାକ୍ତର ଆସି ତିନି ଝିଅଙ୍କୁ ଓଷଦ ଦେଲେ । ରାତିସାରା ଓଷଦ ଦିଆ ଚାଲିଲା । ତା'ପରେ ସକାଳକୁ ଯାଇ ସେମାନଙ୍କର ଦେହଟିକେ ଭଲ ଲାଗିଲା ।

ମାଙ୍କଡ଼ ଡାକ୍ତର କହିଲେ – ଏତେସବୁ ଜର, ସର୍ଦ୍ଦି କାହିଁକି ହେଲା ଜାଣିଚ ? ଏଇ ଅଦିନିଆ ବର୍ଷାରେ ଭିଜିବାରୁ । ପୁଣି ସେଇ ତଳେ ପଡ଼ିଥିବା ଅସନା ମସନା କୋଳି ଖାଇବାରୁ ଜିପିରିର ପେଟ ଖରାପ ହେଇ ଝାଡ଼ା ହେଲା ।

ମନେରଖ, ପାଣିଦୋଷରୁ, ଜର, ସର୍ଦ୍ଦି, ଝାଡ଼ା ଆଦି ରୋଗ ହୁଏ । ତେଣୁ ସବୁକଥାକୁ ଜଗିରଖି ଚଳିବା ଭଲ ।

ଚିପିରି, ଛିପିରି, ଜିପିରି, ଖାଲି ଜୁଳୁଜୁଳୁ ହେଇ ଚାହୁଁଥାଆନ୍ତି ଏ କଥା ଶୁଣି ।

# କାଠ ବାଉଁଶ କଳି

ଥରକର କଥା । ଧୂମା ପାହାଡ଼ ବୋଲି ଗୋଟେ ପାହାଡ଼ ତଳେ ଥାଏ ଏକ ବଡ଼ ଜଙ୍ଗଲ । ସେଇ ଜଙ୍ଗଲ ଭିତରେ କେତେ ନା କେତେ ଗଛ । ବଡ଼ବଡ଼ ମୋଟାମୋଟା ଗଛ । ଆଉ ଠିକ୍ ସେଇ ଜଙ୍ଗଲ ମଝିରେ ଥାଏ ଗୋଟେ ବାଉଁଶ ବୁଦା ।

ଗଛମାନଙ୍କ ଭିତରେ ଥାଆନ୍ତି ଆମ୍ବ, ପଣସ, ଶାଳ, ପିଆଶାଳ, ମହୁଲ, ଶିଶୁ ଏମିତି କେତେ କ'ଣ । ଏଡ଼େ ଏଡ଼େ ଗଣ୍ଡିକୁ କେତେ ନା କେତେ ଡାଳ । ଚାହିଁଲେ ଆଖି ପାଇବନି । ଏତେ ଡାଳ ଯେ ଗଣି ବସିଲେ ଗଣି ହେବନି । ହେଲେ ଗଛ ଗୁଡାକ ଛଡ଼ାଛଡ଼ି ହେଇ ଠିଆ ହେଇଥାଆନ୍ତି । କିଏ ଏଠି ତ କିଏ ସେଠି । କିଏ ନଈ କୂଳେ ତ କିଏ ପଥର ପାଖରେ ।

ମାତ୍ର ବାଉଁଶ କଥା ଅଲଗା । ଜଙ୍ଗଲ ମଝିରେ ଗୋଟେ କାହିଁରୁ କ'ଣ ବଡ଼ ବୁଦା କରି ସେମାନେ ଥାଆନ୍ତି । ସଭିଏଁ ଏକାପରି । ସମସ୍ତେ ସମସ୍ତଙ୍କୁ ବହୁତ ଭଲ ପାଇଲା ଭଳି ଏକାଠି ଥାଆନ୍ତି । କେହି କାହାକୁ ଛାଡ଼ି ଯାଆନ୍ତିନି । ସଭିଙ୍କର ଅବା ଗୋଟିଏ ମନ । କେବେ ତାଙ୍କ ଭିତରେ ଝଗଡ଼ା ହୁଏନି ।





ସବୁଦିନେ ରାତିହେଲେ ଜଙ୍ଗଲରେ ପଶୁପକ୍ଷୀମାନେ ଶୋଇପଡ଼ନ୍ତି, ମାତ୍ର ଗଛଲତାସବୁ ଶୁଅନ୍ତି ନାହିଁ । ରାତିସାରା ତାଙ୍କର କଥାଭାଷା ଚୁପ୍‌ଚାପ୍ ଚାଲେ । ରାତି ଟା ହଉଚି ଗଛମାନଙ୍କର ଅସଲ ସମୟ । ସେତିକିବେଳେ ହସଖୁସୀଠାରୁ ଆରମ୍ଭ କରି ଗୀତ ବୋଲାବୋଲି ଯାଏଁ ସବୁକାମ ଚାଲେ ତାଙ୍କର ।

ଦିନେ ବାଉଁଶ ବୁଦା ପାଖରେ ଥିବା ବଡ଼ ମହୁଲ ଗଛଟା ଚିଡ଼େଇଲା ଭଳି ଗୋଟେ ସାନ ବାଉଁଶକୁ କହିଲା – ''ହେଃ ! ତମେ ଗୁଡ଼ାକ ବଡ଼ ବଦମାସ୍ ! ତମ ଦିହ ସାରା ଖାଲି କଣ୍ଟା । ଦେଖୁନ କେମିତି ସରୁଆ ସରୁଆ ଦିହ ତୁମମାନଙ୍କର । ତମେ ସବୁ କ'ଣ କାଠରେ ଗଣା । ତମେ ଗୁଡ଼ାକୁ ଗଛ ନୁହଁ । ଖାଲି ମୋଟା ମୋଟା ଘାସ ।''

କଥାଟା, ବାଧିଲା ସାନ ବାଉଁଶକୁ । ବୁଦାରେ ଥିବା ବଡ଼ ବାଉଁଶମାନଙ୍କୁ ସେ ସବୁକଥା କହିଲା । ସମସ୍ତେ ମହୁଲଗଛକୁ କଟମଟ ଆଖିକରି ଚାହିଁଲେ । କିନ୍ତୁ କ'ଣ କରାଯିବ ? ମହୁଲ ତ କିଛି ମିଛ କହିନି । ଶେଷକୁ ସେଠୁ ବୁଢ଼ା ବାଉଁଶଟି କହିଲା – ''ମହୁଲ ଭାଇ ତମେ ସିନା ମୋଟା ଆଉ ବଡ଼ ବୋଲି ଗର୍ବ କରୁଛ ହେଲେ ତୁମେ ଯେମିତି ଜଙ୍ଗଲର ବାସିନ୍ଦା ଆମେ ସେମିତି ଜଙ୍ଗଲର ବାସିନ୍ଦା । ଖାଲି ତୁମେମାନେ କ'ଣ ଭଲ । ଆମେ କିଛି ଭଲ ନୁହଁ ?

ମହୁଲ ଗଛ ଏ କଥା ଶୁଣି ଖାଲି ଫଁ ଫଁ ହେଲା । କହିଲା, 'ଯାଆମ ! ଇଏ ଗୋଟେ ବୁଢ଼ା ଆସିଲା କଥା କହିବ ! ଆରେ ବୁଢ଼ା ଘାସ, ମୋର ସରୁ ଡାଳ ଯେଡ଼ିକି, ତୋର ଦେହଟା ସେଡ଼ିକି । ତୁ କ'ଣ କଥା କହିବୁ ? ଫୁଙ୍କିଦେଲେ ପରା କୁଆଡ଼େ ଉଡ଼ିଯିବୁ ?

ଏ କଥା ଶୁଣି ବୁଢ଼ା ବାଉଁଶ କିଛି କହିଲାନି । ଚୁପ୍‌ଚାପ୍ ମନମାରି ରହିଲା ।

ଯୋଗକୁ ସେଦିନ ରାତିରେ କୁଆଡେ ଥିଲା, କଳାହାଣ୍ଡିଆ ମେଘ ଉଠେଇ ଝଡ଼ ଆସିଲା । ପବନ ବୋହିଲା ସାଇଁ ସାଇଁ । ସତେକି ଧୁମା ପାହାଡ଼ଟାକୁ ଗଡ଼େଇ ପକେଇବ । କେତେ ଗଛଙ୍କର ଡାଳ ଭାଙ୍ଗିଲା କେତେ କିଏ ବଡ଼ ସାନ ଗଛ ଉପୁଡ଼ି ପଡ଼ିଲେ ତାର ହିସାବ ନାହିଁ । ଶେଷକୁ କଳି କରିଥିବା ମହୁଲ ଗଛଟା ବି ଭୁଷ୍ ଭାଷ୍ କରି ଉପୁଡ଼ି ପଡ଼ିଲା । ବଡ଼ ପାଟିରେ ଚିତ୍କାର କରି ଡାକୁଥାଏ ମହୁଲ ଗଛ । ସେଇଠି ବାଉଁଶ ବୁଦା ସେଇମିତି ଥାଏ । ବାଉଁଶମାନଙ୍କର କିଛି ହେଇ ନ ଥାଏ । ବାଉଁଶମାନେ ମିଟିମିଟି ଆଖିକରି ଚାହିଁଥାଆନ୍ତି ଉପୁଡ଼ା ମହୁଲ ଗଛକୁ ।

ସକାଳ ପାଇ ନ ଥାଏ । ବୁଢ଼ାବାଉଁଶ, ବାଉଁଶବୁଦାର ବଡ଼ ସାନ ସଭିଙ୍କୁ କହିଲା– ଦେଖିଲ ତ ମହୁଲ ଗଛର ଅବସ୍ଥା ? ନିଜେ ଖାଲି ମୋଟାସୋଟା ହେଇଯିବା ବଡ଼ କଥା ନୁହେଁ । ସଭିଏଁ ମିଳି ମିଶି ରହିଲେ ଯାଇ ବିପଦରୁ ରକ୍ଷା ମିଳେ । ଆଉ ଗୋଟେ କଥା । କେହି କାହାକୁ ହତାଦର କରିବା ଏକ ଖରାପ ଗୁଣ । ମନେରଖ ।



# ଚୁମ୍‌କି ଚଢ଼େଇ କଥା

ଗୋଟିଏ ଜଙ୍ଗଲ ଥାଏ । ସେଥିରେ ଘର କରିଥାଏ ଚୁମ୍‌କି ଚଢ଼େଇ । ଯୋଗ ଦେଖ । ସେଇ ଜଂଗଲକୁ ଆସିଲେ ଜଣେ ସିଦ୍ଧ ବାବା । ତାଙ୍କୁ କୁହୁକ ପାଠ ଜଣା । ଚୁମ୍‌କି ବାବାଙ୍କୁ ନେଇ ଫୁଲଫଳ ଦେଲା । ତାଙ୍କ ପାଖରୁ କୁହୁକ ପାଠ ପଢ଼ିଲା ।

ପାଠ ସରିଲା ଦିନ ବାବା କହିଲେ– ''ଚୁମ୍‌କି ଲୋ ଚୁମ୍‌କି ! କୁହୁକ ପାଠକୁ ଉପକାରରେ ଲଗେଇବୁ, କାହାର ଅନିଷ୍ଟ କରିବୁନି ।'' ଚୁମ୍‌କି ଜେ ଆଜ୍ଞା କହି ବିଦାହେଲା ।

କେତେଦିନ ଗଲା । ଚୁମ୍‌କି ବିଚାରିଲା ଜଙ୍ଗଲ ଛାଡ଼ି ଗାଁ ଗଣ୍ଡାକୁ ଯିବ । ସହର ବଜାର ବୁଲିବ । କୁହୁକ ପାଠର କରାମତି ଦେଖେଇବ ।

ସେଇଆ ହେଲା । ଯାଉ ଯାଉ ସେ ଦେଖିଲା ଗୋଟିଏ ଦୋକାନରେ ମିଠେଇ ବିକ୍ରୀ ହଉଚି । ଦେକାନିକୁ ଚୁମ୍‌କି କହିଲା, ''ଭାଇ ମିଠେଇଟିଏ ଦିଅ ।''





ଅପୂର୍ବ କଥା ! ଏଡ଼ିକିଟିଏ ଚଢ଼େଇ, କି ସୁନ୍ଦର କଥା କହୁଛି ! ଦୋକାନୀ ମିଠେଇଟିଏ ଦେଲା ।

ଚୁମ୍‌କି ଭାବିଲା, ଏଡ଼େ ବଢ଼ିଆ ମିଠେଇଟେ । ମୁହଁ ହାତ ନ ଧୋଇ ଖାଇବି କେମିତି ? ସେଇଠୁ ଫୁର୍‌କିନା ଉଡ଼ିଗଲା ନଈ କୂଳକୁ । ନଈ କୂଳରେ ପଥର ଉପରେ ମିଠେଇଟି ଥୋଇ, ଗଲା ମୁହଁ ଧୋଇବାକୁ । ଯୋଗ ଖରାପ । ମିଠେଇଟି କେମିତି ଅଣଦେଖ ହେଇ ଥୁଆ ହେଇଥିଲା । ଗଡ଼ି ଗଡ଼ି ଯାଇ ପାଣିରେ ପଡ଼ି କୁଆଡ଼େ ବୁଡ଼ିଗଲା ।

ଚୁମ୍‌କି କହିଲା, ''ଏ ନଈ ! ମୋ ମିଠେଇ ଦେ । ନ ହେଲେ ଦେଖିବୁ ।'' ନଈ ମିଠେଇ ଦବ କ'ଣ ଖାଲି କିରି କିରି ହସିଲା । ଏ ଥର ସତକୁ ସତ ଚୁମ୍‌କି ରାଗିଗଲା । ତାକୁ କୁହୁକ ପାଠ ଜଣା । କାହାକୁ କିଆଁ ଡରିବ ? ସିଦ୍ଧବାବା କହିଥିବା କଥା ଭୁଲିଗଲା ସେ । ହ୍ରୀଂ, କ୍ଲିଂ କରି କ'ଣ ସବୁ ମନ୍ତ୍ର ପଢ଼ିଲା । ଚାହୁଁ ଚାହୁଁ ତାର ଏଡ଼େ ପାଟି, ଏଡ଼େ ପେଟ ହେଇଗଲା । ସେଇଠୁ ମୁହଁ ଲଗେଇ ନଈଟା ଯାକର ପାଣି ପିଇଗଲା ଚଁ ଚଁ କରି । ନଈରେ ଯେତେ ଗେଣ୍ଡା, କୋଚିଆ, ମାଛ, କୁମ୍ଭୀର ଥିଲେ ସବୁ ତା' ପେଟ ଭିତରେ ପଶିଲେ । ମିଠେଇଟା ବି ପଶିଲା ପେଟରେ ।

ଚୁମ୍‌କି ବସିଥାଏ ଓଳିଆ ପେଟ କରି ।

ଏତିକିବେଳେ ସେଇବାଟେ ଟିମା ସର୍ଦ୍ଦାର ଆସିଲା । ଦେଖିଲା ସାରା ନଈଟା ଶୁଖି ଖଡ୍ ଖଡ୍ । କିଏ କଲା ଏ କାଣ୍ଡ ? ଟିମା ସର୍ଦ୍ଦାର ସେ ରାଜ୍ୟର କଟୁଆଳ । ତା' ହାତରେ ଧାରୁଆ ଖଣ୍ଡା ଚକ୍ ଚକ୍ କରୁଥାଏ ।

ଟିମା ପୁଣି ଦେଖିଲା ଚୁମ୍‌କି ସେଠି ପେଟ ଓହଳେଇ ବସିଚି । ତାକୁ ବଡ଼ ହସ ମାଡ଼ିଲା । ସେ ଫେଁକିନା ହସିଦେଲା ।

ଚୁମ୍‌କି ରାଗି ପାଚି ନିଆଁବାଣ । ଟିମାକୁ କହିଲା, ''କହିଁକି ହସିଲୁ ? ମୁଁ ତତେ ଛାଡ଼ିବିନି । ନିଶ୍ଚୟ ଗିଳିବି । ନିଶ୍ଚେ ନିଶ୍ଚେ ନିଶ୍ଚେ । ତୋ ଖଣ୍ଡା ପଟକ ବି ଗିଳିବି । ଏଇ ଦେଖ୍ ଗିଳିଲି ।''

ଟିମା ଚୁମ୍‌କିକୁ ବୁଝେଇଲା ପରି କହିଲା, ''ଆଲୋ ମୁଁ ତୋ'ଆଗରେ ଛାର ମଣିଷଟେ, ଏତେ ତରତର କିଆଁ ? ମତେ ପଛେ ଗିଳିବୁ । ଆଗ ଖଣ୍ଡାଟା ଗିଳ୍ ।''

ଚୁମ୍‌କି କିଛି ନ ବିଚାରି ଖଣ୍ଡାଟାକୁ ଗିଳିଦେଲା ।

ପେଟରେ ଖଣ୍ଡାଟା ଯେମିତି ପଶିଚି ଫଟରକିନା ଚିରି ହୋଇଗଲା ତାର ପେଟ । ଭୁସୁ ଭୁସୁ ହେଇ ବାହାରି ଆସିଲା ନଈଟା ଯାକର ପାଣି । ତା' ସହିତ ଯେତେ ଯିଏ ଗେଣ୍ଡା, କୋଚିଆ, ମାଛ, କୁମ୍ଭୀର ପଶିଥିଲେ ସବୁ ବାହାରିଯାଇ ନଈରେ ପଶିଲେ ।

ଟିମା ଏ ଅଦ୍ଭୁତ କଥା ଦେଖି କାବାକାଠ । ଚୁମ୍‌କିର କୁହୁକ ପାଠ ପାଣିଫୋଟକା ପରି କୁଆଡ଼େ ଉଭେଇ ଗଲା ।



# ମୂଷାଟିଏ ମୂଷୀଟିଏ

ମୂଷାଟିଏ ମୂଷୀଟିଏ । ସହରରେ ଘର କରି ଥାଆନ୍ତି । ଏ ଘରୁ ସେ ଘର ବୁଲି ଯାହା ପାଆନ୍ତି ପେଟରେ ଭରନ୍ତି । ସହରରେ ବିଲେଇ କୁକୁର ଗୁଡ଼ାକ ସିଠି ମିଠିଆ । ମୂଷାଙ୍କ ପାଇଁ ତାଙ୍କର ଟକ ନାଇଁ । ମୂଷା ମୂଷୀଙ୍କର ବିଲେଇ, କୁକୁର, କାଉଙ୍କ ଅପେକ୍ଷା ସହରର ଯନ୍ତ୍ରପାତିକୁ ବଡ଼ ଡର । ଯୋଉଠି ଚକ ଘୂରୁଛି, ସେଠି ବିପଦ । କୋଉ ଖଞ୍ଜରେ କିଏ କେତେବେଳେ ସ୍ୱାହା ହୋଇଯିବ, କହିବା ମୁସ୍କିଲ୍ ।

ସେଥିକୁ ପୁଣି ସହରର ଘରମାନ ସିମେଣ୍ଟରେ ଗଢ଼ା । କୋଉ ଦାନ୍ତ ଭୁସିବ ସେଠି । ମୂଷାମୂଷୀ ଦିହେଁ, ତାଙ୍କ ପୂର୍ବପୁରୁଷ କୁଆଡ଼େ ଗାତରେ ରହୁଥିଲେ ବୋଲି ଶୁଣିଛନ୍ତି । ହେଲେ ଏବେକା ଜମାନାରେ ସେ କଥା ଆଉ ନାହିଁ । କୋଉଠି ଡାବଲରେ, ବହିଥାକ ତଳେ, ରୋଷେଇ ଘର ଆଳିମାଳିକା ପେଡ଼ି ପଛପଟେ କି ଷ୍ଟୋର ଘରର ଜିନିଷପାତି ଭିତରେ କାଗଜ ଟୁକୁରା, କନାପଟା, ଛରିଫରି ଯୁଟେଇ ଯାହା ଘର ବାନ୍ଧିବା କଥା । ଆଧୁନିକ ଯୁଗରେ ସେଇଟା ହିଁ ମୂଷାଙ୍କ ଘର ।





ମୂଷାମୂଷୀଙ୍କ ପିଲାପିଚିକା ବୋଇଲେ ବକଟେ ନାହିଁ । ମୂଷାର କହିବା କଥା ମୂଷୀ କୁଆଡ଼େ ଦିନେ ଭୁଲରେ କୋଉ ବାବୁଆଣୀଙ୍କ ଚମଡ଼ା ହାତ ବ୍ୟାଗରେ ପଶି ଖାଇବା ଚିଜ ଅଣ୍ଡାଳୁ ଅଣ୍ଡାଳୁ ଗୋଟେ ଦୁଇଟା ଓଷଧ ବଟିକା ଖାଇ ଦେଇଛି । ସେଇ ଯୋଗୁଁ ହତଭାଗିନୀଟାର ପିଲାଛୁଆ ନାହିଁ ।

ଏଇମିତି ଦିନ ଯାଏ । ମୂଷାର ମୂଷୀଠେଇଁ ବଡ଼ ଆଦର । ମୂଷୀର ମୂଷାଠେଇଁ ଢ଼େର ସରାଗ । ଦିନେ ମୂଷୀ କହିଲା, ''ହଇଏ ଶୁଣୁଚ, ଗାଁମାନଙ୍କରେ ମୂଷାମାନେ ଭାରି ଭଲରେ ଅଛନ୍ତି । ସେଠି ଗାତ କରି ରହିହବ । ମାଟି ସେଠି ବଡ଼ କଅଁଳ । ଏଠି ଅଇଁଠା ପାଉଁରୁଟି, ଫୋପଡା ଚିକେନ୍ ହାଡ଼, ମାଛ କଣ୍ଟା ଖାଇ ଖାଇ ବିତାପର ଲାଗିଲାଣି । ସମସ୍ତେତ ଟିଣରେ ଭରି କରି ଚାଉଳ ଡାଲି ସବୁ ରଖିଲେ ଆମେ ସେ ସବୁ କାହୁଁ ପାଇବା ? କୁଟୁରୁ କୁଟୁରୁ ନ କରି ଦାନ୍ତ ଭାଡ଼ିକ ସିଠେଇ ଗଲାଣି । ଦିହରେ ବି ଉଜଳ ନାଇଁ । ଦେଖୁନ ତୁମ ରୂମ କେମିତି ଫାକୁଟିଆ ଧଇଲାଣି ? ଏଠି ତ ସବୁ ଜିନିଷରେ ବିଷ ଓଷୁଅ, ଚଳିବା କେମିତି ? ଚାଲ ପଳେଇବା । ଗାଁରେ ଟିକେ ଭଲରେ ରହିବା ହେଲେ ।

ମୂଷା କହିଲା, ''ହଉ ତୋ' କଥା ହଉ । ହେଲେ କହୁଚୁ ଯେ, ଯିବା କେମିତି ?''

ମୂଷୀ କହିଲା, ''କାହିଁକି ? ଏଇ ଯୋଉ ଘର ମାଲିକ, କ'ଣ ଚାକିରିରେ ଅଛି ବୋଲି ଶୁଣୁଚି । ଜିନିଷପତର ଲୁଚେଇ ଆଣି ଘରେ ପୂରୋଉଚି । ଫି ହପ୍ତା ସରକାରୀ ଗାଡ଼ିରେ ଲଦି ସେ ସବୁ ବୁଆଡ଼େ ନିଜ ଗାଁରେ ଦେଇ ଆସୁଚି । ସଂଜବେଳକୁ ଜିନିଷ ଲଦି ଥୋଉଚି, ରାତିକୁ ଯାଉଚି । ଆମେ ସେଇ ମଉକାରେ ଅନ୍ଧାର ଦେଖି ଗାଡ଼ି ଭିତ୍‌ରେ ଲୁଚିଯିବା । କୋଉ ବଳେଇବ ?

ସେଇଆ ହେଲା । ମୂଷା ଆଉ ମୂଷୀ ଫିକର କରି ଗାଁରେ ହାଜର ହେଲେ । ସହରଠାରୁ ଢେର ବାଟ ଦୂର । ନିଶା ଗରଜୁଛି । ଅଧରାତି । ଚାଇଁ ଚାଇଁ ଲାଗୁଚି ଚଉଦିଗ । ଗାଡ଼ି ରହୁ ରହୁ ଗିରସ୍ତ ଭାରିଜା ଖପାଖପ୍ ଡେଇଁ ପଡ଼ିଲେ । ହେଲେ ଇଏ କ'ଣ ? ଗାଆଁ ଘର ଗୁଡାକ ବି ଲୋକେ ସିମେଣ୍ଟ କରି ଦେଲେଣି । ତଥାପି ମାଟି ଜାଗା ଢେର ଅଛି । ରାତି ସାରା ମୂଷାମୂଷୀ ଦିହେଁ ଏଣେ ତେଣେ ଟହଲ ମାରି ଭୋକ ଲାଗିଲାରୁ ଖାଦ୍ୟ ଖୋଜିଲେ । ହେଲେ ମୁଗ, ବିରି, ଧାନ, ଚାଉଳ କାହିଁ ? ଗାଆଁ ଲୋକଗୁଡ଼ାକ ଏବେ ହୁସିଆର ହେଇଗଲେଣି । ଦସ୍ତାଟିଣର ଡୋଲି କରି ସବୁ ସାଇତି ରଖୁଛନ୍ତି । କୁକୁର ବିଲେଇଙ୍କର ଗନ୍ଧ ଭାସୁଚି ସବୁଆଡ଼େ ।





ପାଞ୍ଚ ସାତ ଘର ବୁଲିବା ପରେ ଶେଷକୁ ଗୋଟେ ବାଉଁଶ ତିଆରି ଧାନ ଡୋଲିଟିଏ ମିଳିଲା । ଦାନ୍ତ ଲଗେଇ କଣା କଲାବେଳକୁ ଫାକାସି ଉଡ଼ିଗଲାଣି । ଦୁଇ ଚାରିଟା ଚାଉଳ ପେଟରେ ପଡ଼ିଚି କି ନାହିଁ କାହୁଁ ଗୋଟାଏ ଭୁଆ ବିରାଡ଼ି ରଡ଼ିଟାଏ ପକାଇଲା । ମୂଷା ଆଉ ମୂଷୀଙ୍କର ଛାତି ଫାଟିଗଲା ବୋଲି ଜାଣ ।

''ଗାଆଁ ମାଟିରେ ରାତି ଅଧିଆ ଭୁଆ ରଡ଼ି ଏତେ ଭୟଙ୍କର ? ଇଲୋ ମାଆଲୋ ।'' ଏତକ କହି ପକେଇ ମୂଷୀ ମୂଷାକୁ ଫିସିଫିସି କହିଲା, ''ଶୁଣୁଚ ! ମୋର ପରିସ୍ରା ହୋଇଗଲା ନା କ'ଣ ? ଧଡ଼୍‌କିନା ମୂଷା ଭିଡ଼ିନେଲା ମୂଷୀକୁ ଡୋଲି ସେପଟକୁ । କହିଲା, ''ହୁସିଆର । ଅଜଣା ଜାଗା । କେତେବେଳେ କିଏ କୋଉଠୁ ବାହାରିବ ଠିକଣା ନାହିଁ । ମୁଁ କହୁଚି, ଅଜଣା ଥାନ ଅପେକ୍ଷା ଜଣାଶୁଣା ଥାନରେ ରହିବା ବିଜ୍ଞପଣିଆ । ଚାଲ, ଫେରିଯିବା । ଜିପ୍‌ଗାଡ଼ିଟା ଥୁଆ ହେଇଚି । ଡ୍ରାଇଭର କାହାକୁ ଗୋଟେ କହୁଥିଲା, ରାତି ଥାଉ ଥାଉ ଫେରିଯିବା ।''

ମୂଷାମୂଷୀ ଦିହେଁ ସେଇମିତି ଉପାସ ପେଟରେ ଡେଇଁ ପଡ଼ିଲେ ଜିପ୍ ଭିତରକୁ । କିଛି ସମୟ ପରେ ଜିପ୍ ଛାଡ଼ିଲା ।

ସେମାନେ ସଭିଏଁ କେତେବେଳେ ସହରରେ ପହଞ୍ଚିଲେ କିଏ ଜାଣେ ?

